# ସାହିତ୍ୟ ବେଉଷଣ

ଫତୁରୀ ନନ୍ଦ



# ସାହିତ୍ୟ ବେଉଷଣ

( ଗଳ୍ପ ସଙ୍କଳନ )

ଫକୀରାନନ୍ଦ



ଫ୍ରେଣ୍ଡସ୍ ପବ୍ଲିଶର୍ସ

ପୁସ୍ତକ ପ୍ରକାଶକ ଓ ବିକ୍ରେତା

ବିନୋଦ ବିହାରୀ, କଟକ - ୨

**ସାହିତ୍ୟ ବେଉଷଣ** : ଲେଖକ—ଫତୁରାନନ୍ଦ, ପ୍ରକାଶକ—ଫ୍ରେଣ୍ଡ୍‌ସ୍ ପବ୍ଲିଶର୍ସ, ବିନୋଦବିହାରୀ, କଟକ—୨, ମୁଦ୍ରକ—ଡଗର ପ୍ରେସ, ପିଠାପୁର/କଟକ—୧, ପ୍ରଥମ ମୁଦ୍ରଣ—୧୯୮୩, ପ୍ରଚ୍ଛଦପଟ ଶିଳ୍ପୀ—ଶ୍ରୀ ଉଦୟନାରାୟଣ ଜେନା ।

**Sahitya Beusana**: Author : Faturananda, Publisher-Sahadev Pradhan, Friends' Publishers, Binodebehari, Cuttack-753002, Orissa, (India), First Edition-1983, Cover design Sri Udayanarayan Jena, Printer—Dagaro Press, Pithapur, Cuttack-2, Price-10-00

# ଉତ୍ସର୍ଗ

## ଶ୍ରୀଯୁକ୍ତ ରାଜକିଶୋର ପଟ୍ଟନାୟକ କରକମଳେଷୁ !

ହେ ନୀରବ ସାଧକ, ସାହିତ୍ୟର ବଡ଼ପଣ୍ଡାମାନଙ୍କ ସ୍ୱୀକୃତିକୁ ଅପେକ୍ଷା ନ କରି ଆପଣ ଯେପରି ନୀରବରେ ସାହିତ୍ୟ ସାଧନା କରି ଆସୁଅଛନ୍ତି ସେଥିରେ ମୋର ମସ୍ତକ ଆପଣଙ୍କ ସାଧନା ନିକଟରେ ନତ ହୋଇଯାଇଛି । ତାହାର ନିଦର୍ଶନ ସ୍ୱରୂପ ଏହି କ୍ଷୁଦ୍ର ପୁସ୍ତକଟି ଆପଣଙ୍କ ହସ୍ତରେ ଅର୍ପଣ କଲି । ସାଦରେ ଗ୍ରହଣ କରିବେ । ଆପଣଙ୍କର ଗୁଣମୁଗ୍ଧ ।

**ଫତୁରାନନ୍ଦ**

# ମୋ କଥଆଡ଼ୁ ଦୁ'ପଦ

ବନ୍ଧୁ, ଡକ୍ଟର କୃଷ୍ଣଚରଣ ବେହେରାଙ୍କ ଉତ୍ସାହରେ ସାହିତ୍ୟ ସମ୍ବନ୍ଧୀୟ ଗଳ୍ପଗୁଡ଼ିକ ଏକାଠି କରି ସାହିତ୍ୟ ବୃକ୍ଷ ବହିଟି ପ୍ରକାଶ କରିଥିଲି । ଜେ. ମହାପାତ୍ର ଏଣ୍ଡ କୋ.ଙ୍କ ଦ୍ୱାରା ଏହା ପରିବର୍ଦ୍ଧିତ ହୋଇ ପ୍ରକାଶିତ ହୋଇଥିଲା । ପରେ ପରେ ଏହିପରି ଗପ ଆଉ କେତେଗୁଡ଼ିଏ ଲେଖିଲି । ସାହିତ୍ୟ ବୃକ୍ଷ ପରେ ସାହିତ୍ୟ ବେଉଷଣ କରିବି ବୋଲି ମନରେ ଭାବିଥିଲି । ଉଗର ସହ ସମ୍ପାଦକ ତଥା ପଞ୍ଚାୟତ କଲେଜ, ନିଶ୍ଚିନ୍ତ କୋଇଲିର ଅଧ୍ୟାପକ ଶ୍ରୀଯୁକ୍ତ ବିଜୟାନନ୍ଦ ସିଂହ ମୋର ପାଣ୍ଡୁଲିପି ବସ୍ତାନ ଘଣ୍ଟାଘଣ୍ଟି ଓ ବଛାବଛି, ସଜାସଜି ଓ ଶେଷରେ ଦଉଡ଼ା ଦଉଡ଼ି କରି ଫ୍ରେଣ୍ଡସ୍ ପବ୍ଲିଶର୍ସର ସ୍ୱତ୍ୱାଧିକାରୀ ଶ୍ରୀଯୁକ୍ତ ସହଦେବ ପ୍ରଧାନଙ୍କ ପାଖରେ ସଙ୍କଳନଟିକୁ ପେଶ୍ କଲେ । ସେ ମଧ୍ୟ ପାଣ୍ଡୁଲିପି ପରୀକ୍ଷା ନ କରି ଛାପିବା ପାଇଁ ଉଗର ପ୍ରେସକୁ ପଠାଇଦେଲେ । ମୋ ଲେଖା ଉପରେ ତାଙ୍କର ଆଖିବୁଜା ଆସ୍ଥା ସ୍ଥାପନ ମୋତେ ଆନନ୍ଦିତ ତଥା ବିସ୍ମିତ କରିଛି । ଏଥିପାଇଁ ଅଧ୍ୟାପକ ଶ୍ରୀ ସିଂହ ଓ ପବ୍ଲିଶର୍ସ ଶ୍ରୀଯୁକ୍ତ ପ୍ରଧାନଙ୍କୁ ଆନ୍ତରିକ ଶୁଭେଚ୍ଛା ଜଣାଉଛି । ଶିଳ୍ପୀ ଶ୍ରୀ ଉଦୟନାରାୟଣ ଜେନା ପ୍ରଚ୍ଛଦପଟରେ ମୋ ମନର କଳ୍ପନାକୁ ସଠିକ ରୂପରେଖ ଦେଇପାରିଥିବାରୁ ତାଙ୍କର ସର୍ବାଙ୍ଗୀନ ଅଭିବୃଦ୍ଧି କାମନା କରୁଅଛି ।

ଗଳ୍ପ ରଚନା କାଳରେ ମୋର ସାନଭାଇ ଅଧ୍ୟାପକ ଶ୍ୟାମସୁନ୍ଦରର ଅବଦାନ ଅତି ଗୁରୁତ୍ୱପୂର୍ଣ୍ଣ । ମୁଁ ଲେଖିଯାଏ କିନ୍ତୁ ପଢ଼ିପାରେ ନାହିଁ । ଶ୍ୟାମ ସେହି ଲେଖାର ସଂଶୋଧନ ଏବଂ ସ୍ଥଳବିଶେଷରେ ଗୋଟିଏ ଗୋଟିଏ ବାକ୍ୟର ପରିମାର୍ଜନ କରି ସେଗୁଡ଼ିକର ଲାବଣ୍ୟକୁ ଅଧିକତର ସୁନ୍ଦର କରିଥାଏ, ଏଥିଲାଗି ତାକୁ ଅନ୍ତରର ସ୍ନେହାଶୀର୍ବାଦ ଦେଉଛି ।

ସାହିତ୍ୟ ସୃଷ୍ଟି ପରେ ସାହିତ୍ୟ ବୈଶିଷ୍ଟ୍ୟ କଲି । ଏଥିରେ ଭଲ ସାହିତ୍ୟ ବଢ଼ିବ । ସାହିତ୍ୟ ବୃଦ୍ଧିରେ ବାଧାସୃଷ୍ଟି କରୁଥିବା ଅନାବନା ଘାସ ସଦୃଶ କେତେକ ଅବାଞ୍ଛିତ ତଥାକଥିତ ସାହିତ୍ୟ ମରିଯିବ । ସୁସ୍ଥ ସାହିତ୍ୟ ବଢ଼ିବ ଓ ଫୁଲ ଦେବ ।

ଶେଷରେ ପୁସ୍ତକଟିକୁ ପାଠକମାନଙ୍କ ହାତରେ ଅର୍ପଣ କରୁଛି । ଉଭୟ ପ୍ରଶଂସକ ଓ ନିନ୍ଦୁକମାନଙ୍କର ମତାମତକୁ ମୁଁ ସ୍ୱାଗତ କରୁଛି । ପ୍ରଶଂସକଙ୍କ ଆହ୍ଲାଦ ଓ ନିନ୍ଦୁକଙ୍କର ମନ୍ତ୍ର ମୋର ରଚନା ଡଙ୍ଗାକୁ ସାହିତ୍ୟ ସମୁଦ୍ରରେ ଠିକ୍ ବାଟରେ ନେଇଯାଇପାରିବ । ଉଭୟଙ୍କୁ ବିନମ୍ର ଅଭିବାଦନ ଜଣାଇ ରହିଲି ।

ଫତୁରାନନ୍ଦ



# ସୂଚିପତ୍ର


| ଗଳ୍ପ | ପୃଷ୍ଠାଙ୍କ |
|---|---|
| ୧ । କବ ଛୁଆର | ୧ |
| ୨ । ଲଣ୍ଡ୍ରଠକ ସାହ୍ନିଧର | ୧୧ |
| ୩ । ଲେଖେଇ କୁଲପ | ୧୮ |
| ୪ । ମତଦାନ | ୨୮ |
| ୫ । ସ୍ୱଂଶବି ଂଶାବଧାମୀ | ୩୧ |
| ୬ । କାଣ୍ଟୁଆ ସଘାପତି | ୪୭ |
| ୭ । ସମ୍ମିଳନୀ ସଫଳେଇ | ୫୭ |
| ୮ । ପତ୍ରିକା ଠମକ୍ | ୬୫ |
| ୯ । ଓଠମୂଳଆ ଯୁଦ୍ଧ କବତା | ୭୫ |
| ୧୦ । ରାଧାନାଥଙ୍କ ନଶ | ୮୭ |
| ୧୧ । ପଦ୍ମତୋଳା | ୯୪ |
| ୧୨ । ବକ୍ତୃତା ଅମଳ | ୧୦୨ |




# କାଷଡିଆର

ଦନେଇଦାସ ସବୁବେଳେ ମୁହଁଟାକୁ ହାଣ୍ଡିପରି କରି ବସିବାଟାକୁ କନ୍ହେଇ ଦାସ ମୋଟେ ପସନ୍ଦ କଲା ନାହିଁ । ଦିନେ ତାକୁ ଏକାନ୍ତରେ ପାଇ ଏକା ଜଗରଥର ପଚାରିଲା—"ଆଚ୍ଛା ଦନେଇ ତୋର କଅଣ ହୋଇଛି କହୁନୁ, ସବୁବେଳେ ଏମିତି ମୁହଁ ଭୁର୍କୁଣ୍ଡା କରି ବସିଛୁ । କଥା କଅଣ ?"

"ମୋତେ ଆଉ କିଛି ଭଲ ଲାଗୁନି ?"

"ଆରେ କାହିଁକି ଭଲ ଲାଗୁନି ତାହାର ଗୋଟାଏ କାରଣ ତ ଥିବ ?"

"କଅଣ ମିଳିବ ସେ କାରଣରୁ ! କାରଣଟାରୁ ଆଉ କାଡ଼ି ହୋଇଯିବନି !"

"ଆରେ କଅଣ କାରଣଟା କହୁନୁ, କାରଣଟା ଜାଣିଲେ ସିନା ଛଡ଼ାଇନ୍ତି ।"

"ତାକୁ ମଣିଷ ଛଡ଼େଇ ପାରିବନି, ଛଡ଼େଇଲେ ଛଡ଼େଇବ ଭାଗ୍ୟ ।"

"ଆଚ୍ଛା ତୁ କାରଣଟା କହିଲୁ । କିଛି ନ ହେଲେ ଗ୍ରହପୂଜା କରେଇ, ଚଣ୍ଡୀ ମନ୍ଦିରରେ ବୋଦା, ମଙ୍ଗଳାଙ୍କ ଠେଇଁ କୁକୁଡ଼ା, ଆଣ୍ଠୁଆ ଗୋପାଳଙ୍କ ପାଖରେ ଲହୁଣୀ, ଗବଡ଼, ପେଡ଼ା, ଗୋପାଳନାଥଙ୍କ ଠେଇଁ ଖୁଆଦିଆ ଛେନାଖିରି, ଗଣପତିଙ୍କୁ ପଲାଉ ଆଳୁ ପୋଟଳରସା ଦେଇ ଭାଗ୍ୟକୁ କୁତୁକୁତୁ କଲେ ସେ ସଙ୍ଗେ ସଙ୍ଗେ ସବୁ ମନ୍ଦ ଛଡ଼େଇ ନେଇ ପାକସ୍ଥାନକୁ ପାର୍ଶଲ କରି ପଠେଇଦେବ । ଏବେ କହିବୁଟି କାରଣଟା–ଆରେ କହୁନୁ-ଏଁ-"

"ସତ କହୁଛୁ କହେଇ-ଏ ଜୀବନପ୍ରତି ଗୋଟାଏ ତାଚ୍ଛଲ୍ୟଭାବ ଆସିଗଲାଣି, ବହୁ କାମରେ ହାତ ମାରିଲିଣି, ହେଲେ କେଉଁ ଗୋଟିକରେ ବି ସଫଳତା ମିଳିଲା ନାହିଁ । ମୁଁ ସବୁଠାରୁ ପରାସ୍ତ । ଏ ଯୁଗରେ ଯଦି ଜଣେ ଦଶଜଣଙ୍କ ଆଗରେ ନଜର କରୁ ଗୋଟାଏ ସ୍ୱାତନ୍ତ୍ର୍ୟ ଦେଖାଇ ନ ପାରିବ ତେବେ ଜୀଇଁ ରହିବାରେ କି ଲାଭ !

"କଥାଟା ମୋତେ କେମିତି ଅବାଗିଆ ଅବାଗିଆ ଲାଗୁଛି । ମୋତେ ଯେମିତି ଜଣାପଡୁଛି ତୋର ଧୈର୍ଯ୍ୟର ଅଭାବ । କେଉଁଠି ଟିକିଏ ବାଧା ପାଇଲେ ଭାଙ୍ଗି ପଡ଼ୁଛୁ । ଆଚ୍ଛା ତୁ କଅଣ ହେବାକୁ ସବୁଠୁ ଭଲ ପାଉ କହିଲୁ ।"

"ସତ କହୁଛି-ମୋର ଭାରି ଇଚ୍ଛା ଥିଲା ଗୋଟାଏ କବି ହେବାକୁ । କହିନା ଭାଇ ଦୁଇ ତିନ ରିମ୍ ଫେଣ୍ଟେ କାଗଜ ସାରେଇଲି, ବୋତଲେ ସୁଲେଖା କାଳି ସାରିଲି, ପୋଷ୍ଟେଜରେ ବାଇଶ ଟଙ୍କା ସାରିଲି । ଅସନା ସମ୍ପାଦକଗୁଡ଼ାକ ଏଡ଼େ ଗର୍ଜିଆ ହୋଇଛନ୍ତି ଯେ କେହି ଜଣେ ହେଲେ ଖଣ୍ଡିଏ ହେଲେ କବିତା କାଢ଼ିଲେନି, ବିରକ୍ତ ହୋଇ ନକଲ କରି ରଖିଥିବା କେତୋଟାକପାକ କବିତା ଚୂଲିରେ ମୁହାଁଇ ଦେଲି ।"—

"ହା-ଚଣ୍ଡାଳଟା କଅଣ କଲୁରେ ! ମୋତେ ଟିକିଏ କହିଲୁନି । ଯୋଉଟା ରହିଥାନ୍ତା ସେଇଟା କହେଇ ଦେଇଥାଆନ୍ତିରେ । ହେଲା ନାହିଁ ତ ଢିଅ ପୋଡ଼ । ତୁ ତ କାହ୍ନୁ ସାନ୍ୟାଲ ବଡ଼ଭାଇ ବନିଗଲୁ ।"

"ଆଉ ସେଗୁଡ଼ାକ କଅଣ ହୋଇଥାନ୍ତା ଯେ ?"

"ଦେଖୁଛି ତୋର ବହୁତ ଟ୍ରେନିଂ ପାଇବାର ଅଛି ।"

"ଓଡ଼ିଆରେ ଏମ.ଏ. ପାଶ୍ କରିଛି । କବିତା ଲେଖିବାକୁ ପୁଣି ଆହୁରି ଟ୍ରେନିଂ ଦରକାର ?"

"ଆ-ହା-ହା-ବୁଝିଲୁ ଖମ୍ବଆଳୁଟା । ମୁଁ କଅଣ କହୁଛି ଲେଖିବା ପାଇଁ ଟ୍ରେନିଂ ? ମୁଁ କହୁଛି ପ୍ରକାଶ କରିବା ପାଇଁ ତୋର ଟ୍ରେନିଂ

ଦରକାର, ଏଇ ଟ୍ରେନିଂ ନ ପାଇ ବହୁ ବ୍ରଣମଲ୍ଲୀ ବଣରେ ଝଡ଼ି ପଡ଼ୁଛନ୍ତି । ତୋ ଭାଗ୍ୟ ଭଲ ତୁ ମୋ ହାବୁଡ଼ରେ ପଡ଼ିଗଲୁଣି । ଆଉ ତୁ ନ ଝଡ଼ୁ । ତୋ ବାମ୍ଫାକୁ ଲୋକଙ୍କ ନାକରେ ଜବରଦସ୍ତ ଭର୍ତ୍ତି କରେଇଦେବି ।"

"ଆଚ୍ଛା ଦେଖିବା ତୋର କରାମତି । ତୁ କେଡ଼େ କାଢ଼ୁ-ମର୍ଦ୍ଦନ !"

"ବୁଝିଲୁ କବିତା ଲେଖିଲେ କବି ହୁଅନ୍ତିନି । ସେଗୁଡ଼ାକ ପତ୍ରିକାରେ ବା ପୁସ୍ତକ ଆକାରରେ ଛପା ହେଲେ ଯାଇ କବି ହୁଅନ୍ତି । କବି ହେବାପାଇଁ ପ୍ରଥମ ଶ୍ରେଣୀର ପାଠ ଆଜ ପଢ଼ଉଛୁ ମନଦେଇ ଶୁଣ୍ । ଆଉ ନୋଟ୍ ବହିରେ ଟିପି ନେ ।"

"ହଉ ସାର୍, ପଢ଼ାନ୍ତୁ ସାର୍, ସବୁ ଟିପିନେବି ସାର୍ !"

"ଉଁ—ହୁଁ ଗୁରୁଦେବ କହ ।"

"ଯେ ଆଜ୍ଞା ଗୁରୁଦେବ, ପଢ଼େଇବା ଆରମ୍ଭ କରନ୍ତୁ ଗୁରୁଦେବ !"

"ଆରେ ଆଗ ଖଣ୍ଡେ ପାନ ପୂଜା କର ।"

"ହଁ ହଁ ନେବା ହେଉ ଗୁରୁଦେବ !"

"ଦେଖ, ପ୍ରଥମ ପାଠ ହେଲା ଯେତେ ପତ୍ରପତ୍ରିକାର ସମ୍ପାଦକ ଅଛନ୍ତି ସମସ୍ତଙ୍କ ବିଷୟରେ ସବୁକଥା ସଂଗ୍ରହ କରି ତାକୁ ଘୋଷି ଏକା-ବେଳକେ ମୁଖସ୍ଥ କରିଦେବ । ସମ୍ପାଦକ କେଉଁ ଜିନିଷକୁ ଖୁବ୍ ବେଶୀ ଭଲ ପାଆନ୍ତି ସେଇଟା ନିହାତି ଦରକାର । ନହେଲେ କବିତାର ନାଁ ଧରିବ ନାହିଁ । ସମ୍ପାଦକ ପଚାରିଲେ ଅଳ୍ପ ମୁରୁକିହସା ଦେଇ କହିବ-ଆଜ୍ଞା ଆପଣଙ୍କୁ ଟିକିଏ ଦେଖିବାକୁ ଆସିଲି । ଆଗରୁ ତାଙ୍କର ଗୋଟାଏ କଥା ଲେଖା ଭଲ କରି ମୁଖସ୍ଥ କରି ନେଇଥିବ—କହିବ—'ଆଜ୍ଞା ଆପଣଙ୍କର ସେ ଅମୁକ ଲେଖାଟି ପଢ଼ି ଏକାବେଳକେ ମୁଗ୍ଧ ହୋଇଗଲି । ନହେଲେ ତ ବିଶ୍ୱାସ

ହେଲ ନାହିଁ ଏଡ଼େ ବଳବାନ ଲେଖା ଜଣେ ଓଡ଼ିଆ ସମ୍ପାଦକଙ୍କ କଲମରୁ ବାହାରିବାରେ ! ଟିକଏ ଧାଇଁ ଆସିଲି ଦେଖା କରିବାକୁ ।

"ଯେତେ ଜାଲ ମାଡ଼ୁଆ ସମ୍ପାଦକ ହୋଇଥାଉନା କାହିଁକି ସେ ଟିକଏ ନରମିଯିବ । ସେ ହୁଏତ କହିବ—'ମୁଁ କବା ଗ୍ଭର । କଅଣ ବା ଲେଖିଛୁ ଆପଣଙ୍କୁ କାହିଁକି ଯେ ଭଲ ଲାଗିଲା ମୁଁ ଜାଣିପାରୁ ନାହିଁ ।

"ଏତିକି ତା ମୁହଁରୁ ଯଦି ବାହାରିବ ଜାଣିବୁ ତେଣିକି ସମ୍ପାଦକ ନର୍ଭ୍ୱଲ ଖ୍ୱବରେ ତୋ ଥୋପକୁ ଗିଳିଛି । ବାସ୍ ସପ୍ତାହେ ଦୁଇ ସପ୍ତାହ ତୋର ଗ୍ଭଡ଼ିଦେବୁ । ନଡ଼ ପଳାଏ ଦି ପଳା ତେଲରୁ ବେଶି ଦରୁନ । ଦେଲେ ସମ୍ପାଦକଟା ହସିଆର ହୋଇଯିବ । ଦିନେ ସମ୍ପାଦକ ଯେଉଁ ଜିନିଷ ଖାଇବାକୁ ଭଲପାଏ ସେଇଆ ଧରି ପହଞ୍ଚିଯିବୁ । ସମ୍ପାଦକ ମାନେ ଖ୍ୱକଲା । ପତ୍ରିକା ପାଇଁ ସବୁଯାକ ପଇସା ତାଙ୍କର ଖର୍ଚ୍ଚ ହୋଇ-ଥାଏ । ଭଲକରି ଗଣ୍ଡାଏ ଖାଇବାକୁ ପାଆନ୍ତି ନାହିଁ । ଭଲ ପାଉଥିବା ଜିନିଷଟି ପାଇଲେ—'ଆହା—ଏସବୁ କାହିଁକି ଆଣିଲେ, ଆପଣଙ୍କର ଏପରି ଖର୍ଚ୍ଚାନ୍ତ ହେବା ଠିକ୍ ହେଲାନି' କହି ହାତଗୁଲୁ କରିବେ । ଏମିତି ମାସେ ଦି'ମାସ ସମ୍ପାଦକଙ୍କୁ ଖେଳେଇବା ପରେ ଦିନେ ତାଙ୍କୁ ଗୋଟିଏ କବିତା ଦେଖାଇଁ ସଂଶୋଧନ କରିଦେବାକୁ କହିବ ଏବଂ ତା ସଙ୍ଗେ ସଙ୍ଗେ ସେଇ ସ୍ଥାନର ଜଣେ କର୍ମଚ୍ଭରୀକୁ ବରା, ପିଆଜ ଆଳୁଚପ୍ ଆଣିବା ଲାଗି ପଇସା ଦେବ । ସମ୍ପାଦକମାନେ ବରା, ପିଆଜର ବଡ଼ ଭକ୍ତ । ଏଇଥିରେ ସେମାନେ ଅତିଥିଙ୍କୁ ଆପ୍ୟାୟିତ କରିଥାଆନ୍ତି । ତାହାଠାରୁ ଅଧିକ ଦାମ୍‌ର ଜଳଖିଆ ପାଇଁ ତାଙ୍କ ଅଣ୍ଟାରେ ଦମ୍ ନ ଥାଏ । ଫଳରେ ସେମାନେ ମଧ୍ୟ ସେହି ବରା, ପିଆଜ ଆଳୁଚପ୍‌ର ଭକ୍ତ ବନିଯାଆନ୍ତି । ସେତକର ସଦ୍‌ବ୍ୟବହାର ଓ କବିତାର ସଂଶୋଧନ ପରେ କହିବ—'ଆଃ ! କବିତାର ଚେହେରା ଝଲସିଗଲା । ଏଇଟା ବର୍ତ୍ତମାନ ପତ୍ରିକରେ ପ୍ରକାଶ ପାଇବାର ଉପଯୁକ୍ତ ହୋଇଛିତ ?

"ସମ୍ପାଦକ ଯେତେବେଳେ ସଂଶୋଧନ କରିଛନ୍ତି ସେତେବେଳେ ସେ କେବେହେଲେ ନା କରିପାରିବେନି । ତମର ସେଇଟା ପ୍ରଥମ ଲେଖା ଆଉ ସେଇଟି ତାଙ୍କ ପତ୍ରିକାରେ ସ୍ଥାନ ପାଇଲେ ଜୀବନ ଧନ୍ୟ

ହୋଇଯିବ କହି, କବିତାଟିକୁ ତାଙ୍କର ଜମାଦେଇ ବିଦାୟ ନେଇ ଚାଲି ଆସିବ । ସମ୍ପାଦକ ଆଉ ଯାହା ହୁଅନ୍ତୁନା . ତାଙ୍କୁ ବେଇମାନ କହିହେବ ନାହିଁ । କବିତାଟି ସେହି ସଂଖ୍ୟାରେ ହେଉ କିମ୍ବା ତା'ର ପର ସଂଖ୍ୟାରେ ନିଶ୍ଚୟ ବାହାରିବ । ବାହାରିବାର ଛଅ ସାତଦିନ ଘୁମ୍ମାରି ରହିଯିବ । ତାପରେ ଯାଇ ଆରମ୍ଭ କରିଦେବ 'ଆଜ୍ଞା ରେଭେନ୍‌ସା କଲେଜର ଓଡ଼ିଆ ଅଧ୍ୟାପକ ବୈଷ୍ଣବ ସାମଲ ସେ କବିତାଟିକୁ ଭାରି ତାରିଫ୍ କଲେ । ମୁଁ ସଫା ସଫା କହିଦେଲି – ଆରେ ସେଇଟା ତାଙ୍କୁ ସିନା ମୋ କବିତା, ହେଲେ ତାର ମାଧୁର୍ଯ୍ୟ ଫୁଟେଇଛନ୍ତି ଖୋଦ୍ ସମ୍ପାଦକ । ତାଙ୍କରିଲାଗି ଜାଣ ମୁଁ କବିତାରେ ପାଦ ଦେଲି । ମୋ କବି ଜୀବନର ସିଏ ହେଲେ ପ୍ରତିଷ୍ଠାତା । ବୈଷ୍ଣବବାବୁ କହିଲେ—ହଁ। ସେ କଥା କହନ୍ତୁ । ଜଣେ ନାମଜାଦା ସମ୍ପାଦକର ପୋଖତ ହାତ ନ ବାଜିଲେ ଏପରି କବିତା ବାହାରିବା ଅସମ୍ଭବ । ଆପଣ କୁଆଡ଼େ ନିଜ ହାତରେ ବହୁ ଲବ୍‌ଧ-ପ୍ରତିଷ୍ଠ କବିଙ୍କ ପିଣ୍ଡ ଗଢ଼ିଛନ୍ତି । ଏହିପରି ପ୍ରତ୍ୟେକ କବିତା ପରେ ଆଠ ଦଶଜଣ ଓଡ଼ିଆ ଅଧ୍ୟାପକଙ୍କ ପ୍ରଶଂସା ଢିଆରି କରି ସମ୍ପାଦକଙ୍କ ମୁଣ୍ଡ ଉପରେ ଢାଳିବ ।

"ଆଠ ଦଶଟା କବିତା ବାହାରିଯିବା ପରେ ଆଉ ଜଣେ ସମ୍ପାଦକଙ୍କୁ ହାବୁଡ଼ିବ । ତାଙ୍କୁ ଓ ତାଙ୍କ ପତ୍ରିକାକୁ ଆଗ ଭଲକରି ତେଲରେ ଜୁଡ଼୍‌ବୁଡ଼୍ କରିଦେବ । ତାଙ୍କର ଲାଗି ସେ ପତ୍ରିକାଟି ତିଷ୍ଠି ରହିଛି ବୋଲି ଅଧ୍ୟାପକମାନେ ଆଲୋଚନା କରୁଥିବାର ଶୁଣିଛି ବୋଲି କହିସାରିବା ପରେ ପୁଣି ଥରେ ତେଲ ମାଲିସ କରିବ ଏବଂ ଅନୁତପ୍ତ ହେଲା ଭଙ୍ଗୀରେ କହିବ—"ଆଜ୍ଞା ମୋର ଭାରି ଇଚ୍ଛା ଆପଣଙ୍କ ପତ୍ରିକାକୁ ସାହାଯ୍ୟ କରିବାକୁ, କିନ୍ତୁ କରିବି କଅଣ, ଗୋଟିଏ କବିତା ଲେଖିବା ମାତ୍ରେ ସେ ସମ୍ପାଦକ ଘରକୁ ଆସି ଛଡ଼େଇ ନେଇଯାଉଛନ୍ତି । ସୁଯୋଗ ଉଣ୍ଡୁଛି ଦିନେ ଭୁରୁକା ମାରିଦେଇ ଆପଣଙ୍କୁ କବିତାଟା ଦେଇଦେବି' ।

"ଏହି କଥାଟା ସବୁ ପତ୍ରିକା ସମ୍ପାଦକଙ୍କୁ କହିବ ଓ କିଛି ପରେ ସବୁଠାରେ ଗୋଟିଏ ଲେଖାଏ କବିତା ଗଳେଇ ପଂକେଇ ଚାଲିଆସିବ । ଯେଉଁ ଯେଉଁ ପତ୍ରିକାରେ କବିତା ବାହାରିବ ସେହି ସେହି ସମ୍ପାଦକ-

ମାନଙ୍କ ପାଖକୁ ଅନ୍ୟ ହାତରେ ତମ କବିତାର ଉଚ୍ଛ୍ୱସିତ ପ୍ରଶଂସା, ପତ୍ରମାନ ଲେଖାଇ ନେଇ ଦୂରସ୍ଥାନମାନଙ୍କରୁ ପୋଷ୍ଟରେ ପଠେଇଦେବ । ଖବରଦାର ନିଜ ହାତରେ ଲେଖିବ ନାହିଁ । ସମ୍ପାଦକ ତମ ହସ୍ତାକ୍ଷରକୁ ଚିହ୍ନିପାରେ । ଏଥିରେ ଭଣ୍ଡିଆ ହୋଇଯିବ । କବିତାଟିଏ ଦେଲାବେଳେ ପ୍ରତ୍ୟେକ ସମ୍ପାଦକଙ୍କୁ କହିବ—ଆଜ୍ଞା ବହୁ ପରିଶ୍ରମ କରି ଏ କବିତାଟି ଲେଖିଥିଲି । ଅମୁକ ଅମୁକ ସମ୍ପାଦକ କେମିତି ଜାଣିପାରି ଏକାବେଳକେ ଛଡ଼େଇବାକୁ ତିଆର । ସାଫ୍ ସାଫ୍ ଶୁଣେଇଦେଲି ନା, ନା-ଆଗ ମୋର ଜନ୍ମଦାତା ମୋର କାବ୍ୟଗୁରୁ, ମୋ ସାହିତ୍ୟ ଜୀବନର ପ୍ରତିଷ୍ଠାତା ଚିର-ନମସ୍ୟ ସମ୍ପାଦକଙ୍କୁ ଦେବ । ଯେ ମୋତେ ଦି' ଗୋଡ଼ରେ ଠିଆ ହେବାକୁ ଶିଖାଇଛନ୍ତି; ତାଙ୍କୁ ଦେଇ ସାରିବାପରେ ଆଉ ଯାହାକିଛି ଲେଖି ଦେବ । ମାଫ୍ କରନ୍ତୁ ।

"ବନ୍ଧୁ ଓ ପାଠକ ମହଲରେ ସବୁବେଳେ ବ୍ୟସ୍ତଥିଲା ଭଳି ଦେଖେଇ ହୋଇ କହିବ—ଓଃ, ସମ୍ପାଦକ ଗୁଡ଼ାକ ବସେଇ ଉଠେଇ ଦେଲେଣି । ରାସ୍ତାରେ, ଘାଟରେ, ଘରେ, ବାହାରେ ଯେଉଁଠି ଦେଖୁଛନ୍ତି ମାଗୁଛନ୍ତି କବିତା । ଦିଅ କବିତା, ଦିଅ କବିତା, ଶୁଣି ଶୁଣି କାନ ତାବଦା ହୋଇଗଲାଣି । ମନ ହେଉଛି କୁଆଡ଼େ ଛୁଡ଼ିପଳାନ୍ତି । ଗୋଟାଏ ବଣରେ ଯାଇ ନିର୍ଜନାରେ ରହନ୍ତି ।

"ଏଇତକ ହେଲା ପ୍ରଥମ ଶ୍ରେଣୀର ପାଠ । ଏହାକୁ ଛମାସ ରିହର୍ସଲ କର । ଛଅମାସ ପରେ କେତେଦୂର ଉନ୍ନତ ହୋଇଛି ଦେଖି ଦ୍ୱିତୀୟ ଶ୍ରେଣୀ ପାଠ ଆରମ୍ଭ କରିବ ।" "ଏବେ ଗଲାଲି ।"

× × ×

ଛଅମାସ ପରେ ପୁଣି ଗୁରୁଶିଷ୍ୟ ଭେଟ ହେଲା । ଆନନ୍ଦରେ କୁଲୁରି ଉଠି ଦନେଇ କହିଲା –

"ଗୁଡ୍ ମର୍ଣିଂ ସାର୍ ।"

"ଦୂର୍ ଅର୍ବାଚୀନ, ଭକ୍ତିଭରେ କହ – ପ୍ରଣାମ ଗ୍ରହଣ କରନ୍ତୁ ଗୁରୁଦେବ !"

"ପ୍ରଣାମ ଗ୍ରହଣ କରନ୍ତୁ ଗୁରୁଦେବ ।"

"ଆଚ୍ଛା ଶିଷ୍ୟ, ଫଳାଫଳ ବର୍ଣ୍ଣନା କର । ଆଗେ ପାନପୂଜୀ ।"

ପାନ ଖଣ୍ଡିଏ ବଢ଼େଇ ଦେଇ ଦନେଇ କହିଲି । "କହିଲେଇ ଘଇ ! ତୋ ପାଠ ମନ୍ଦ କାମ ଦେଖାଇନ, ହେଲେ ପଛରେ ଗୋଟାଏ ବଡ଼ ଠୋକର ଖାଇଗଲି । ଛେଁ କରି ବରାଡ଼ଟା ଛୁଇଁଦେଲି ।"

"ଏଁ ବରାଡ଼ ଛୁଇଁଲି ? କେଉଁଠି ?"

"ଆଗ ମୁଁ ଯାଇ 'ଅମାଲୁ' ପତ୍ରିକାର ସମ୍ପାଦକଙ୍କ ପାଖରେ ପୁଡ଼ିଆ ଜମେଇଲି; ତେଲରେ ପଚେଇ ଏକାବେଳକେ ପାଗେଇ ଦେଇଥିଲି । ଦନେ ସେ ତାଙ୍କର ଗୋଟିଏ ସମ୍ପାଦକୀୟ ପଢ଼ି ମୋତେ ଶୁଣାଇଲେ । ସେଗୁଡ଼ାକ ଏକାନରେ ପଶି ସେ କାନରେ ବାହାରି ଯାଉଥାଏ । ପଢ଼ା ଶେଷରେ ମୋର କିଛି ମନେ ନ ଥିଲେ ବି ଏକାବେଳକେ ଲଗାମଛଡ଼ା ପ୍ରଶଂସା କରି ସେପରି ସମ୍ପାଦକୀୟ ସାରା ଜୀବନରେ କେଉଁଠି ପଢ଼ା ନ ଥିଲି ବୋଲି କହିଲି । ସେହିଦନ କାମରେ ମୁଁ ଭୁବନେଶ୍ୱର ଚାଲିଗଲି । 'ଅମାଲୁ' ବାହାରିବାର ତନ ଗୁରୁବନ ପରେ ତାଙ୍କ ପାଖରେ ପୁଣି ଯାଇ ପହଞ୍ଚିଲି । ଆରମ୍ଭ କରିଦେଲି—ଆଜ୍ଞା ଆପଣଙ୍କର ସେ ସମ୍ପାଦକୀୟଟା ଭୁବନେଶ୍ୱରରେ ଏକ ଗୁଞ୍ଜଲ୍ୟ ଖେଳାଇ ଦେଇଛି । କଲେଜର ଅଧ୍ୟାପକମାନେ ସେ ବିଷୟରେ ଖୁବ୍ ଚର୍ଚ୍ଚା କରୁଥିଲେ । ଖୁବ୍ ତାରିଫ୍ କରୁଥିଲେ ।

"କେଉଁ ସମ୍ପାଦକୀୟ ?"

"ସେଇ ଯୋଉଟା ମୋ ଆଗରେ ତନ ଗୁରୁବନ ତଳେ ପଢ଼ୁଥିଲେ !"

"କଅଣ ହେଲି ? ହଇହେ ମୋତେ ଥଟ୍ଟା କରୁଛ ? ସେ ସମ୍ପାଦକୀୟ କଅଣ ବାହାରିଲାଣି ? ସେଇଟା ପରବ ଆସନ୍ତା ସଂଖ୍ୟାପାଇଁ ଲେଖା ହେଉଛି ।"

"ତେନ୍ତୁଳ ଗୁଡ଼ରେ ମାଡ଼ଖାଇଲା ପରେ ଗୁଡ଼ିପିଟି ହୋଇ ପଳେଇ ଆସିଲି । ବରାଡ଼ ପୁଣି ଏମିତି ଟୁଙ୍କେ ! ଭଗବାନ ! ଏବେ ବି ମୋତେ ଲାଜ ମାଡ଼ୁଛି ତାଙ୍କ ପାଖ ମାଡ଼ିବାକୁ । ଏତିକ ଛାଡ଼ିଦେଲେ ଆଉ ସବୁ ଭଲ ।"

"ଆଜି ଦ୍ୱିତୀୟ ଶ୍ରେଣୀର ପଢ଼ା ଆରମ୍ଭ । ହାତ ଯୋଡ଼ି ବସ ।"

"ହଉ ସାର୍ !"

"ଫେର୍ କହିଲ ସାର୍ ।"

"ନାହିଁ, ନାହିଁ, ଗୁରୁଦେବ !"

"ହଁ ଏଥର ଶୁଣ । ଆଉକୁ ଧରିବାକୁ ହବ ଖବର କାଗଜ ସମ୍ପାଦକ । ସାହିତ୍ୟ ପତ୍ରିକାରେ ତମକୁ କେବଳ କେତେଜଣ ପତ୍ରିକା ପାଠକ ଜାଣିବେ । ସର୍ବସାଧାରଣତଃ ଚିହ୍ନି ପାରିବେନି । ତେଣୁ ଦରକାର ଖବର୍କାଗଜ ଆଉ ତାହାର ସମ୍ପାଦକ । ପୂର୍ବଭଳି ସବୁ ଦୈନିକ ପତ୍ରିକା ସମ୍ପାଦକଙ୍କର ଗୁଣ, ଚଳନ, ସ୍ୱଭାବ, କଅଣ ଭଲ ପାଆନ୍ତି ସବୁ ଯୋଗାଡ଼ଯନ୍ତ୍ରକରି ମୁଖସ୍ଥ କରିବ । ପୂର୍ବପରି ଖବର କାଗଜର କଟିଂ ଗୋଟାଏ ଲେଖାକୁ ଖିଅକରି ଭେଟିବାକୁ ହେବ ।

"ମାଛୁଆ ସମ୍ପାଦକମାନଙ୍କୁ ଧରିବା ଭାରି ସହଜ । ହାଟରୁ ଗୋଟାଏ ବଡ଼ ରୋହିମାଛ କିଣିନେଇ ସମ୍ପାଦକଙ୍କ ଘରେ ପକାଇଦେବ ଓ କହିବ—"ଆଜ୍ଞା ଆମ ପୋଖରୀରେ ମାଛ ଧରାଯାଉଥିଲା, ଗୋଟାଏ ନେଇ ଆସିଲି । ଆସନ୍ତା ନିର୍ବାଚନରେ ଆମ ନିର୍ବାଚନ ମଣ୍ଡଳୀରୁ ପ୍ରାର୍ଥୀ ହେବାପାଇଁ ବହୁ ମୁଖିଆ ମୁଖିଆ ଲୋକ ମୋତେ ବାରମ୍ବାର କହିଲେଣି । ଆପଣଙ୍କ ନିର୍ଭୀକ, ନିରପେକ୍ଷ ନୀତିଯୋଗୁ ସମସ୍ତେ ଆପଣଙ୍କ ପ୍ରତି ଆକୃଷ୍ଟ— ଏକଥା ବାରମ୍ବାର କହିବୁ । ଆସ୍ଥାନ ଜମିଗଲା ପରେ କାଗଜର ସାହିତ୍ୟ ବିଭାଗରେ କଟିଂ କଡ଼େଇନେବୁ । 'ସମ୍ପାଦକଙ୍କୁ ପତ୍ର' ବିଭାଗରେ ଅନ୍ୟାନ୍ୟ ସମ୍ପାଦକମାନଙ୍କ ଲେଖାର ତେଲିଆ ସମାଲୋଚନା କରିବୁ ।

ଏହାପରେ ବେତାର ଶିଳ୍ପୀ ଓ କର୍ମକର୍ତ୍ତାଙ୍କ ଉପରେ ତେଲ ପିମ୍ପା ଇତ୍ୟାଦି ଲେଖାମାନ କଢ଼େଇବୁ । ଏଥିରେ ଗୋଟାଏ ବଡ଼ ସୁବିଧା ହେବ । ବେତାର ସାହିତ୍ୟ ସମାରୋହରେ ତୋର ଅଳ୍ପ ଅଳବତ ପ୍ରକାଶ ପାଇବ । ସବୁ ଖବରକାଗଜ ଓ ବେତାର ମାଧ୍ୟମରେ ବହୁଲୋକ ଜାଣିପାରିବେ ।

"ନମେ ବିଖ୍ୟାତ ଗାଳ୍ପିକ ଓ କବି ଦନେଇ ଦାସଙ୍କ ଅମୁକେଇ ଠାରେ ସାହିତ୍ୟ ଉପରେ ଏକ ଉପାଦେୟ ବକ୍ତୃତା ଦେଲେ ବୋଲି କଢ଼େଇବୁ । ଏଥିପାଇଁ ପ୍ରତ୍ୟେକ କାଗଜର ଜଣେ ଦି'ଜଣ ସାମ୍ବାଦିକଙ୍କୁ କିଛି ପ୍ରକାର ସାହାଯ୍ୟରେ ବଶ କରିନେବା ଦରକାର ।

"ପିତୃ-ମାତୃ ବିୟୋଗ ଯଦି ହୁଏ ତେବେ ଏହାକୁ ଗୋଟିଏ ସୁଯୋଗ ବୋଲି ଜାଣିବୁ । ପ୍ରଥମେ କଢ଼େଇଦେବୁ ବିଖ୍ୟାତ କବି, ଗାଳ୍ପିକ ଦନେଇ ଦାସଙ୍କ ପିତୃବିୟୋଗରେ ସମସ୍ତେ ମର୍ମାହତ । ଦି ଶ୍ରାଦ୍ଧଦିନ ପରେ କଢ଼େଇବୁ—'ମୋର ପରମାରାଧ୍ୟ ପିତୃଦେବଙ୍କ ବିୟୋଗରେ ଯେଉଁ ହଜାର ହଜାର ବନ୍ଧୁ ସମବେଦନା ଜଣାଇଛନ୍ତି ସେମାନଙ୍କ ପାଖକୁ ଶତନ୍ତ୍ର ଭାବେ କୃତଜ୍ଞତା ଜଣାଇବା ଅସମ୍ଭବ ହେବ ଖବର କାଗଜ ଜରିଆରେ ଜଣାଉଛି ।'

"ଘରେ ଗୁମ୍ମ'ରେ ବସି କାଗଜରେ କଢ଼େଇବୁ ବିଖ୍ୟାତ ଗାଳ୍ପିକ ଓ କବି ଦନେଇ ଦାସ ଅସୁସ୍ଥ ଏବଂ କିଛିଦିନ ପରେ ସେହିପରି ହଜାର ହଜାର ବନ୍ଧୁଙ୍କ ଈଶ୍ୱରଙ୍କ ନିକଟରେ ଆରୋଗ୍ୟ ପ୍ରାର୍ଥନା ପାଇଁ କାଗଜ ଜରିଆରେ କୃତଜ୍ଞତା ଜ୍ଞାପନ ।

"ଆଉ ଗୋଟିଏ ବିଜ୍ଞାପନ ଭଲକାମ' ଦେଖାଇବ । କଢ଼େଇବୁ ବିଖ୍ୟାତ କବି ଓ ଗାଳ୍ପିକ ଦନେଇ ଦାସ ଷ୍ଟେସନରୁ ଗୃହାଭିମୁଖେ ଗଳ୍ପ-ବେଳେ ବାଟରେ ତାଙ୍କର ବିଖ୍ୟାତ ଉପନ୍ୟାସ 'ପେଷ୍ଟର ରୋମାନ୍ସ'ର ପାଣ୍ଡୁଲିପିଟି କେଉଁଠି ଗଳିପଡ଼ିଛି । କେହି ପାଇ ବିଖ୍ୟାତ କବି ଗାଳ୍ପିକ ଦନେଇ ଦାସଙ୍କ ଘରେ ଦେଲେ ସେ କୃତଜ୍ଞତାର ସହ ଯଥେଷ୍ଟ ପୁରସ୍କାର ମଧ୍ୟ ଦେବେ ।

"ବାହାଦର, ପୂଅଜନ୍ମ, ଶ୍ରାଦ୍ଧ, ପର୍ବପର୍ବାଣିରେ ନିଜ ଜ୍ଞାତି କୁଟୁମ୍ବଙ୍କୁ ପଛେ ବାଦଦିଅ ପରବାଏ ନାହିଁ । ସମ୍ପାଦକ ଓ ସାମ୍ବାଦିକ-ମାନଙ୍କୁ ନିଶ୍ଚୟ ନିମନ୍ତ୍ରଣ କରିବ ।

"ଆଉ ଗୋଟାଏ ବଡ଼କଥା ମନେ ରଖିଥିବ କାହା ଆଗରେ କାହା ବିରୁଦ୍ଧରେ କହିବ ନାହିଁ । ସମସ୍ତଙ୍କୁ ସମସ୍ତଙ୍କ ଆଗରେ ଆଖିବୁଜା ତେଲ ଦେବ । ମନେରଖ ଏହା ହିଁ ସମସ୍ତଙ୍କୁ ସନ୍ତୁଷ୍ଟ ରଖିବାର ଗୁରୁକାଠି । ନୈଷ୍ଠିକ ଭାବରେ ଏହା ପାଳନ କଲେ ତୁମେ ରାଜ୍ୟର ଜଣେ ଗଣ୍ୟମାନ୍ୟ ବିଖ୍ୟାତ ଗାଳ୍ପିକ ଓ କବି ବନିଯିବ । ଯାଅ ଏଥର ପ୍ରୟୋଗ କ୍ଷେତ୍ରକୁ ଗମନ କର ଛଅ ସାତ ମାସପରେ ପୁଣି ଦେଖାହେବ । × × ×

ଛଅସାତ ମାସପରେ ଗୁରୁ ଶିଷ୍ୟଙ୍କର ଭେଟ ହେଲା । ଶିଷ୍ୟଙ୍କ ମୁହଁରେ ପ୍ରସନ୍ନତା ନ ଥିବାର କାରଣ ଗୁରୁ ପୁଚ୍ଛା କରନ୍ତେ—ଶିଷ୍ୟ ଆରମ୍ଭ କଲେ ଉପାୟଗୁଡ଼ିକ—ମନ୍ଦକାମ ଦେଲାନି । ସବୁ ଜିନିଷ ଘଣ୍ଟାକଣ୍ଠା ପରି କାମ ଦେଲା । ହେଲେ ଗୋଟାଏ ଘଟଣାରେ ମୋ ମୁଣ୍ଡ ଛିଣ୍ଡି ପଡ଼ିଲା । ଗୋଟିଏ ଗୁଆ ଦୋକାନରେ ମୁଁ ବସିଛି । ଦଳେ କଲେଜ ଟୋକା ଟିକିଏ ଦୂରରେ ବସି କବିମାନଙ୍କ ଉପରେ ଚର୍ଚ୍ଚା ଆରମ୍ଭ କରିଦେଲେ । ଜଣେ ମୁହଁରୁ ବିଡ଼ିବତା କାଢ଼ିଦେଇ କହିଲା—"ସେ ବେହିଆ କବି ଦନେନ ଦାସର ମୁହଁରୁ ପାଣି ଗଡ଼ିଗଲାଣି । ଖବର କାଗଜରେ କେମିତି ଟିକିଏ ନାଁ ବାହାରିବ ସେଥିଲାଗି ସେ ଯାହା ନାହିଁ ତାହା କରିପାରିବ । ବେହିଆଟା ସମ୍ପାଦକମାନଙ୍କୁ କି ତେଲ ଦେଉଛି ଶୁଣିଲେ ଲୋକକୁ ଆଗ ଲାଜ ଲାଗିବ । ଥୋବରାଟା ଭାବୁଛି ଏମିତି କରି ସେ ଗୋଟାଏ ବିଖ୍ୟାତ କବି ବନିଯିବ । ଅଲାଜୁକଟା ସମସ୍ତଙ୍କୁ ବୋକା ସମଝିଛି ।

କେମିତି ସେଠୁ ଖସି ପଳେଇ ଆସିବି ମୋର ବାହାର ସାହାସ ନାହିଁ । ମନଟା ଏକାବେଳକେ ଭାଙ୍ଗି ଚୂନ୍ ଭୂତ ହୋଇଗଲା ।"

ପ୍ରବୋଧ ଦେଇ କହେଇ କହିଲା—"ଯାକୁ କନ୍ତୁ ବିଗିଡ଼ି ଛିଙ୍କ ବୋଲି ଭାବିବା ଠିକ୍ ନୁହେଁ । ସବୁ ଜାଗାରେ ସବୁ ଥାନରେ ଏମିତି କେତେଟା ଲୋକ ଥାଆନ୍ତି । ସେମାନଙ୍କ କଥା ଧରିବାର ନୁହେଁ ।"



# ଲଣ୍ଠନଙ୍କ ସାହାଦିର

ଗେଉଡ଼ାସେ ଓଡ଼ିଶାର ସାଂସ୍କୃତିକ ପ୍ରାଣକେନ୍ଦ୍ର କଟକ ସହରରେ ସାନ୍ଧ୍ୟ ଭ୍ରମଣ କରୁ କରୁ ଗୋଟାଏ ଘରର ନାମ ଫଳକ ଦେଖି ଅଟକି ଗଲେ । ଗତିରୋଧକଟା ( ବ୍ରେକ୍ ) ସତେକି ଯେପରି ପୂରାପୂରି ଚାପି ହୋଇଗଲା । ନାମଫଳକଟିକୁ ସେ ବାଲୁବାଲୁ କରି ଚାହିଁ ରହିଥାଆନ୍ତି । ତାଙ୍କ ମୁଣ୍ଡ ଗୋଳମାଳିଆ ଧରିଲା । ମୁଣ୍ଡ ଭିତରେ ସେ ଖୁବ୍ ଦରଣ୍ଡା-ଦରଣ୍ଡି କଲେ । କିନ୍ତୁ ହାୟ ସବୁ ଶୂନ୍‌ଶାନ । ସନ୍ଦେହ ସାଗର ପାରି ହେବାକୁ ତାଙ୍କୁ କୁଟାଖିଏ ବି ମିଳିଲା ନାହିଁ ।

କୁଟାଖିଏ ନ ପାଇବା ପର୍ଯ୍ୟନ୍ତ ଗୋଡ଼ ନା ଥାନରୁ ଉଠିବାକୁ ନାରାଜ । ତାଙ୍କର ଏପରି ଅବସ୍ଥା ବାସ୍ତବିକ ଅବର୍ଣ୍ଣନୀୟ । କେବଳ କାଳିଦାସ ଏହିପରି ଏକ ଅବସ୍ଥାର ବର୍ଣ୍ଣନା ଗୋଟିଏ ମହାକାବ୍ୟରେ କିଛି କିଛି ଦେଇଥିଲେ । ଅବଶ୍ୟ ଏ ଅବସ୍ଥାରୁ କିଞ୍ଚିତ ଫରକ୍ । ସେଇଟା ହେଲା ଯେ ପାର୍ବତୀ ହରଙ୍କୁ ହଠାତ୍ ଆଗରେ ଦେଖି ଆଗକୁ ଯିବେ କି ପଛକୁ ଯିବେ କିଛି ଠିକ୍ କରି ନ ପାରି ଗୋଟିଏ ପାଦ ଉଠାଇ ସୁଦ୍ଧା ଅଟକି ରହିଗଲେ । ଗେଉଡ଼ାସେ ଠିକ୍ ସେହିପରି ହଠାତ୍ ନାମ ଫଳକଟି ଦେଖି, ଆଗକୁ ଯିବେ କି ପଛକୁ ଯିବେ ଠିକ୍ କରି ନ ପାରି ଅଟକି ରହିଗଲେ । କାଳିଦାସଙ୍କ ପରିବର୍ତ୍ତେ ଯଦି କଳାବଜାରି ଦାସ ସେଠାରେ ଥାଆନ୍ତେ ତେବେ ସେ ନିଶ୍ଚୟ ବଳବଳେଇ ଥାଆନ୍ତେ 'ବିକ୍ଷୁତ ବଦନ ଗେଉଡ଼ୁ ନ ଯଯୌ ନ ତସ୍ଥୌ' ।

କବି ଯେତେ ବଳବଳାନ୍ତୁ ପଛେ, ସେ କ୍ଷେତ୍ର ଏ କ୍ଷେତ୍ର ଭିତରେ ଗୋଟାଏ ବଡ଼ ସୂକ୍ଷ୍ମ ପାର୍ଥକ୍ୟ ରହିଛି । ସେଠି ପାର୍ବତୀ ନିଜ ଇପ୍‌ସିତ ପତିଙ୍କୁ ହଠାତ୍ ଆଗରେ ଦେଖି କାଠଭୂତଆଣି ପାଲଟି ଗଲେ । ଏଠି

ଗେଡ୍ଡ଼ୁଦାସେ ଗୋଟାଏ ଅବୋଧ ଓ ବକ୍ରୀତ ନାମ ବିଶିଷ୍ଟ ନାମ ଫଳକକୁ ଦେଖି କାଠଭୂତ ପାଲଟିଗଲେ । ପାର୍ବତୀ ତାଙ୍କୁ ଆଗରୁ ହୃଦୟଙ୍ଗମ କରି ଖୋଜୁଥିଲେ, ଗେଡ୍ଡ଼ୁଦାସେ ବିଲ୍‌କୁଲ୍ ଖୋଜୁ ନ ଥିଲେ । ତାହା ସମ୍ପୂର୍ଣ୍ଣ ଅପ୍ରତ୍ୟାଶିତ ଥିଲା ।

ଗେଡ୍ଡ଼ୁଦାସେ ଯେ କେତେବେଳଯାଏ ସେଠି ନାମ-ଫଳକକୁ ଚାହିଁ ସେଠାରେ କାଠଭୂତ ହୋଇ ଠିଆ ହୋଇଅଛନ୍ତି ତାହା ତାଙ୍କୁ ଜଣା ନାହିଁ । ହଠାତ୍ ଦ୍ୱାରଦେଶରେ କାହାର ପାଟିଗୁଣ୍ଡ ଶୁଣି ତାଙ୍କର ଧ୍ୟାନ ଭାଙ୍ଗିଗଲା । ନାମ ଫଳକରୁ ଦୃଷ୍ଟି ଫେରାଇ ଦୁଆର ଆଡ଼କୁ ଚାହିଁଲେ—ଦଳେ ନାଳପେଣ୍ଟିଆ, ଲମ୍ବାକଲିଆ, ବବୁରିବାଳୁଆ, ମାଖୁନା-ମୁହା ଗଜା ଟୋକା ତାଙ୍କର ଆଡ଼କୁ ଚାହିଁ ହିଁ ହିଁ ହେଉଛନ୍ତି । କିଏ କହୁଛି ଷ୍ଟ୍ରେଞ୍ଜ୍, କିଏ କହୁଛି ଇଡ଼ିଅଟ୍, କେହି କେହିବା ରଷ୍ଟିକ୍, ଓଲଡ଼ ଫୁଲ୍ ଇତ୍ୟାଦି ଇତ୍ୟାଦି । ସୌଭାଗ୍ୟକୁ ସେଗୁଡ଼ିକ ଏକ ସମୟରେ ଉଚ୍ଚାରିତ ହେଉଥିବାରୁ ଗେଡ୍ଡ଼ୁଦାସେ ସେଥିରୁ କିଛି ଶୁଣିପାରି ନ ଥିଲେ । ଗୁଡ଼ାଏ ଆଖି ତାଙ୍କରି ଉପରେ ନିବଦ୍ଧ ଥିବା ଦେଖି ସେ ପ୍ରଥମେ ଟିକିଏ ଅପ୍ରସ୍ତୁତ ହୋଇଗଲେ । ତା'ପରେ ଦ୍ୱାର ଦେଶରେ ଠିଆ ହୋଇଥିବା ନାଳପେଣ୍ଟିଆମାନଙ୍କୁ ପଚାରିଲେ—"ଆଜ୍ଞା ଏ ଘରେ କଅଣ ହୁଏ କି ? ନାମ ଫଳକରୁ ତ ମୁଁ କିଛି ବୁଝିପାରୁ ନାହିଁ ।"

ଜଣେ ନାଳ ପେଣ୍ଟିଆ କହିଲା—"ବୁଝିପାରୁନାହାନ୍ତି ତ ଭିତରକୁ ଆସ, ଆମ ଆଳାପ ଆଲୋଚନାରେ ଭାଗ ନିଅନ୍ତୁ । ସବୁ କିଛି ବୁଝିଯାଇବ । ସେଠି ହାଁ କରି ଦଶ ଦିନ ବରଷ ବି ଚାହିଁ ରହିଲେ କିଛି ବୁଝି-ପାରିବେନି । ଆସନ୍ତୁ, ଭିତରକୁ ଆସନ୍ତୁ ।"

ଗେଡ୍ଡ଼ୁଦାସେ ସମ୍ମୋହିତ ହୋଇ ଧୀରେ ଧୀରେ ଘର ଭିତରକୁ ପ୍ରବେଶ କଲେ । ଜଣେ ଲମ୍ବାକଲିଆ ତାଙ୍କୁ ଗୋଟିଏ ଚଉକିରେ ବସାଇ ଦେଇ କହିଲା--"ଆପଣ ଏକା କାହିଁକି ଏଠାର ପ୍ରାୟ ସବୁଲୋକ ସମାନ । ଗୋଟାଏ କିଛି ଅଦ୍ଭୁତ ଜିନିଷ ଦେଖିଲେ ହାଁ କରି ରହିଯିବେ । ଆମ ଲଣ୍ଡନରେ କିନ୍ତୁ ଏପରି ଦେଖିବାକୁ ମିଳିବନି । ସେଠି ଲୋକେ ଗୋଟାଏ ଅଦ୍ଭୁତ ଜିନିଷ ଦେଖିଲେ ତା'ଭିତରେ ପଶି ତାକୁ ଖିନଭିନ୍ କରି

ବିଶ୍ଳେଷଣ ନ କରିବା ପର୍ଯ୍ୟନ୍ତ ବାହାର ସମ୍ଭବ ନାହିଁ । ଆପଣଙ୍କର ଉଚିତ ଥିଲା ନାମ ଫଳକକୁ ଦେଖି 'ହଁ।' କରି ଭିତ୍ରି ନ ଯାଇ ଠକ୍ ଠକ୍ ଠକ୍ ଭିତରକୁ ପଶିଆସି ଥାଆନ୍ତେ—ଆଉ ଆମ୍ଭମାନଙ୍କୁ ପଚାରି ଥାଆନ୍ତେ-ଆହେ ଏପରି ଆଶ୍ଚର୍ଯ୍ୟ-ଜନକ ନାମ ଫଳକ ଆମ୍ଭେ କୁତ୍ରାପି ଦେଖି-ନାହୁଁ । ଏହାର ଅର୍ଥ ଆମ୍ଭେ ବୁଝିପାରୁନୁ କି...ଏହା କେଉଁ ଭାଷା ତାହା ମଧ୍ୟ ଜାଣିପାରୁନୁ । ତେବେ ଆପଣଙ୍କର କୌତୂହଳ ଆମେ ନିବାରଣ କରିଦେଇ ପାରିଥାଆନ୍ତୁ ।"

ଗେଉଡ଼ାସେ ଉତ୍ସାହିତ ହୋଇ ପଚାରିଲେ—"ବାସ୍ ବାସ୍, ମୁଁ ତ ସେଇଆ ଭାବୁଥିଲି । ମୋ ମନ କଥାଟା ତ ଆପଣ କହି-ଦେଲେଣି । ଟିକିଏ ବୁଝେଇ ଦେଲେ ଭାରି ଖୁସି ହୁଅନ୍ତି ।"

ଲମ୍ବାକଲିଆ ଗେଉଡ଼ାସଙ୍କର କଥାକୁ ବାହୁତ ବାହୁତ ତାରିଫ୍ କରି ପକୁଡ଼ି ଦୁଇ ପ୍ଲେଟ ଓ ଦୁଇକପ୍ ଚାହା ବରାଦ କରିଦେଲା । ତାହା ମଧ୍ୟ ସଙ୍ଗେ ସଙ୍ଗେ ପାଳିତ ହୋଇଗଲା । ଦୁହେଁ ହାତ ଚଳେଇଲେ । ଲମ୍ବାକଲିଆ ଜଣକ ଟପାଟପ୍ ପକୁଡ଼ି ଉଦରସ୍ଥ କରୁ କରୁ କହିଲା—"ନାମ-ଫଳକରେ ଆପଣ ଦେଖିଲେ 'ଲଣ୍ଡକ ସାହିନ୍ଦର' । ହଠାତ୍ ବୁଝିବାକୁ ଟିକିଏ କଷ୍ଟ ହେବ । ଆଜିକାଲିର ରକେଟ୍ ଯୁଗରେ ସମୟ ଓ ଦୂରତ୍ୱର ଖିବ୍ର ସଂକ୍ଷିପ୍ତ କରଣ ଚାଲିଛି । ଆମର ଏ ଅନୁଷ୍ଠାନଟି ନାକ୍ଷି ସଙ୍କୀର୍ଣ୍ଣତାରେ ଆବଦ୍ଧ ନୁହେଁ । ଆମ ଲଣ୍ଡନଠାରୁ ଭୁମ କଟକ ଯାଏ ଏକ ବିଶାଳ ସଂସ୍କୃତିକୁ କୋଳ କରିଛି । ଲଣ୍ଡନ କଟକ ଶବ୍ଦ ଦୁଇଟିକୁ ସଂକ୍ଷିପ୍ତ କରିବା ପାଇଁ ମଝିରୁ ଦୁଇଟା ଅକ୍ଷର କାଟି ଫୋପାଡ଼ିଦେଇ ପୁଣି ଅଠାରେ ଯୋଡ଼ିଦେଇଛୁ । ଫଳରେ ସେଇଟା ହେଲା ଲଣ୍ଡକ । ସାହିତ୍ୟ ମନ୍ଦିରକୁ ଠିକ୍ ଏହି ପ୍ରକ୍ରିୟାରେ ସାହିନ୍ଦର କରି ଦେଇଛୁ । ପ୍ରାଚ୍ୟ ଓ ପାଶ୍ଚାତ୍ୟର ଅପୂର୍ବ ସମ୍ମେଳନ । ଏଇ ଦେଖନ୍ତୁ ପକୁଡ଼ିଟା ହେଲା ପ୍ରାଚ୍ୟ, ଚାହାଟା ହେଲା ପାଶ୍ଚାତ୍ୟ "ଅପୂର୍ବ, ଅପୂର୍ବ ସମ୍ମେଳନ— ।"

ଏତିକବେଳେ ଗୋଟିଏ ନକ୍‌ଲିପେଣ୍ଟିଆ ଆସି ଲମ୍ବାକଲିଆକୁ କହିଲା—ନଖ ଘାଣ୍ଟୁ ଦେଉଡ଼ିଙ୍କା ମାଗୁଛି । ସେ ଅସମ୍ଭାଳ ହେଲାଣି ।

"ଇଡ଼ିଅଟ୍ ସେଇଟା ! ନାଣ୍ଡିଆ ଯାଇଛି ଶହେ ଟଙ୍କିଆ ନୋଟ୍‌ଟା ଭଙ୍ଗାଇବାକୁ । ସେ ଆସିବାଯାଏ ସବୁର୍ କରିପାରୁନ—ରଫିଆନ୍, ଆଣ୍ଟିସୋସିଆଲ୍, କଣ୍ଟିନେଟାଲ୍ ଇଡ଼ିଅଟ୍ ।"

"ତାକୁ ଏତେ ବୁଝେଇଲେଣି ଶୁଣିପାରୁନ ।"

"ଏ ଆଣ୍ଟିସୋସିଆଲ ଏଲିମେଣ୍ଟଗୁଡ଼ାକ ଏଟିକେଟ୍ ଜାଣିବେ କୁଆଡ଼ୁ । ଆଜ୍ଞା ନାଣ୍ଡିଆ ଟଙ୍କା ଭଙ୍ଗେଇ ଆସିବାଯାଏ ଦୁଇଟା ଟଙ୍କା ଦେବେନି । ଶହେ ଟଙ୍କିଆ ନୋଟ୍‌ଟି ଭଙ୍ଗେଇ ବାହାରେ ଆସୁଥିବ ଇଡ଼ିଅଟ୍‌ଟା ଟିକିଏ ହେଲେ ସବୁର୍ କରିପାରୁନ ।"

ବୁଢ଼ା ଶୋଷାଡ଼ୁ ଶୋଷାଡ଼ୁ ଚେଉ୍‌ଦାଟେ 'ହଉ ହଉ ନଅନ୍ତୁ' କହି ମନିବ୍ୟାଗରୁ ଦୁଇଟା ଟଙ୍କା କାଢ଼ିଦେଲେ । ଲମ୍ବାକଳିଆ ନଳୀ-ପେଣ୍ଟିଆକୁ ତାହା ଦେଇ କହିଲ ଯା—ଯା—ତା' ପଇସା ଦେଇଦେବୁ ଆଉ ଦୁଇଟା ଭଲ ସିଗାରେଟ୍ ଯା ନେଇ ଆସିବୁ ।

ସେ ଘରନ୍ଦୁଆରୁ ଡେଇଁଛି କି ନାହିଁ ଘରର ଗୋଟିଏ କଣରେ ବସି ଗୋଟିଏ ପୁରୁଣା ଖବରକାଗଜ ପଢ଼ୁଥିବା ଆଉ ଏକ ନଳୀପେଣ୍ଟିଆ ଟେବୁଲ ଉପରେ ବିଧାଟାଏ ଦୁମକରି ପିଟିଦେଇ ବଳ୍‌ବଳେଇଲା—"ଗୁଡ଼୍ ନ୍ୟୁଜ୍, ହାପି ନ୍ୟୁଜ୍, ହ୍ୟାଟସ ଅଫ୍ ଫର୍ ସାହେ । ସାବାସ୍, ବଳିହାରି, ଚମତ୍କାର, କି ଆନନ୍ଦର ଦିନ କି ପବିତ୍ର ଦିନ !"

ସମସ୍ତେ ତା'ରି ଆଡ଼କୁ ବାଲୁବାଲୁ କରି ଚାହିଁଥାଆନ୍ତି । ଅତିରିକ୍ତ ଗରମ ପଡ଼ୁଥିବାରୁ ମୁଣ୍ଡ ବିଗିଡ଼ି ଗଲା କି ଆଉ । ଜଣେ ଦି' ଜଣ ତା' ପାଖକୁ ଧାଇଁଯାଇ ପଚାରିଲେ –"କଣ ହୋ, କି ଗୁଡ଼୍ ନ୍ୟୁଜ୍ ?

"ଆ ହା-ହା-ମୋତେ ଧନ୍ୟ, ମୁଁ ଗୁଡ଼ନ୍ୟୁଜଟା ପ୍ରଥମେ ଦେଉଛି । ଆମର ଆଦର୍ଶ, ଆମର ଧ୍ରୁବତାରା, ଆମର ପଥପ୍ରଦର୍ଶକ, ଆମର ଅତି ପ୍ରିୟ ଜାହିଁ ପୋଲ ଶାର୍ତ୍ତ୍ରୀ ନୋବେଲ ପ୍ରାଇଜ ପାଇଛନ୍ତି । ଏକା ଶାର୍ତ୍ତ୍ରୀ ନୁହନ୍ତି ଆମେ ସମସ୍ତେ ଏଥିରେ ଗୌରବାନ୍ୱିତ ହୋଇଛୁ ।"

ଫେଣ୍ଟ୍ରୁ ଖେଳରେ ନିଜ ଦଳ ଟାଣୁଆ ବିରୁଦ୍ଧ ଦଳକୁ ଗୋଲଟାଏ ଦେଇ ଦେଲା ପରି ! ନାଚ, ଡିଆଁ, କୁଦା, ସୁସୁର ଓ କର୍କଶ ଆନନ୍ଦ ଧ୍ୱନରେ ଘରଟା ଥରି ଉଠିଲା । ଗେଡ଼ୁନ୍ଦ୍ର ସେ କାଠଟିପରେ ବସି ରହି ଭାବୁଥାନ୍ତି—ଏ ଜାହାଁପୋଲ ଶାସ୍ତ୍ରୀଟି କଏ ? ଦୁଇମାସ ତଳେ ନୋବେଲ ପ୍ରାଇଜ୍ ପାଇଥିବା ଜମାଂପଲ ସାର୍ଚ୍ଚ ଦେବ ନା' କଣ ! ଏଡ଼ିକ ଭଣ୍ଡଗୁଡ଼ାକ ତାଙ୍କୁ ସଂସ୍କୃତ ପଣ୍ଡିତ ବନେଇ ସାରିଲେଣି ।

ସମସ୍ତଙ୍କ ପାଟି ଖୋଳେଇ ହେବା ହାଲ୍ଲା ଲାଗିରହିଲା । ହାଲ୍ଲା ଥମିଯିବାରୁ ଗୋଟାଏ ଲମ୍ବାକାଲିଆ ପୁଣି ବଲ୍‌ବଳେଇ ଉଠିଲା—"ଶାସ୍ତ୍ରୀ, ଆ-ହା-ହା କ ମଧୁମୟ ନାଆଁଟି ! ଧନ୍ୟ ଶାସ୍ତ୍ରୀ ! ତୁମ କଲମକୁ ଧନ୍ୟ, ତୁମର ସେହି ଅମର ଉପନ୍ୟାସକୁ ଧନ୍ୟ ! ଆହା କ ପବିତ୍ର ଗ୍ରନ୍ଥ ! ଆହା ସେ ବହିଖଣ୍ଡକ ହାତରେ ଧରିଲେ ମନରେ ଏକ ଉନ୍ମାଦନା ଜାଗିଉଠେ, ଶରୀର ରୋମାଞ୍ଚିତ ହୁଏ । ବହିଟିର ଛନ୍ଦେ ଛନ୍ଦେ ପଦେ ପଦେ ମାଦକତା ପୂରି ରହିଛି । ଆରମ୍ଭ କଲେ ଶେଷ ନ କରି ଇଛା ହୁଏନ ।"

ଆଉ ଜଣେ ଲମ୍ବାକାଲିଆ ଆରମ୍ଭକଲା—"ଶାସ୍ତ୍ରୀ ସେମିତି କ୍ଷଣଜନ୍ମା ପୁରୁଷ ନ ହୋଇଥିଲେ ଏପରି ଅନବଦ୍ୟ ପୁସ୍ତକ ଲେଖିପାରନ୍ତେ । ଶହେ ଦୁଇଶହ ବର୍ଷରେ ଏହିପରି ଖଣ୍ଡେ ଖଣ୍ଡେ ବହି ପୃଥିବୀରେ ଆତ୍ମପ୍ରକାଶ କରେ । ଜଗତ ଧନ୍ୟ ହୋଇଯାଏ । ଯେଉଁଦିନ ଏହି ବହି ଖଣ୍ଡିକ ଉପରେ ଶାସ୍ତ୍ରୀ ନୋବେଲ ପ୍ରାଇଜ୍ ପାଇବାର ଶୁଣିଲି ସେ' ଦିନ ବସି ପଖାଳ ଖାଉଥିଲି । ସାନ ଭାଇଟା ଆସି କହି ଦେଲା—ଭାଇ ! ଶାସ୍ତ୍ରୀ ଏ ବହିପାଇଁ ନୋବେଲ ପ୍ରାଇଜ୍ ପାଇଲେ । ଆଉକି ଗୁଣ୍ଡା ତଳେ । ପଖାଳ କଂସାକୁ ପେଲି ଦେଇ ଉଠିପଡ଼ିଲି । ୧୫ ମିନଟଭିତରେ କଟକର ସବୁ ବହି ଦୋକାନ ଧନ୍ଦାଳି ପକାଇଲି । ରିବସ୍ ବୁକସେଲର୍ସ ମରହଟ୍ଟା ଅମଳର; ଅପ୍-ଟୁ-ଡ଼େଟ ବହିଗୁଡ଼ିକର ସନ୍ଧାନ ପାଇବେ କୁଆଡୁ ? ରାତିରେ ଏକ୍‌ସପ୍ରେସ ଯୋଗେ ଚାଲିଗଲି କଲିକତା । ସେଠି ବି ଧନ୍ଦାଳି ଧନ୍ଦାଳି ବହୁ କଷ୍ଟରେ ଗୋଟାଏ ଗୋରା ବହି ଦୋକାନରୁ ପାଇଲି । ବହି ତାହାଣୀଙ୍କ ପରି ସେହି ଦୋକାନରେ ବସି ପଢ଼ିବାରେ ଲାଗିଗଲି । । କେତେବେଳେ ଯେ ଭିତରେ ରାତି ଆଠଟା ହୋଇଗଲା ତାହା ମୋତେ ମାଲୁମ ନାହିଁ । ଗୋରା ଦୋକାନୀଟି ଆସି କହିଲା—ସାର

ରିଡ଼ିଙ୍ଗ ରିଡ଼ିଙ୍ଗ ରିଡିଙ୍ଗ, ନୋ ଇଟିଙ୍ଗ ? ଧ୍ୟାନ ଭାଙ୍ଗିଗଲା । ଦାମ୍ ଦେଇ ବହି ଖଣ୍ଡିକ ଖୁସିରେ ସାଙ୍ଗ ଧରି ଫେରି ଆସିଲି । ମୋତେ ଜଣାଯାଉଥାଏ ଯେପରିକି ମୋ ହାର୍ଟଟା ବହି ସଙ୍ଗରେ ପ୍ରେମାଳାପ କରୁଛି । ହୋଟେଲକୁ ଆସି ବାକିଅଂଶ ଶେଷ କରିଦେଲି ।”

ଆଉ ଜଣେ ଲମ୍ବାକଳିଆ ଭାବ ଗଦ ଗଦ ହୋଇ ଚଳେଇ ଉଠିଲା—“ସେକସପିଅର ଆଜି ବଞ୍ଚିଥିଲେ ଜାହାଁପୋଲ ଶାସ୍ତ୍ରୀଙ୍କୁ ମୁଣ୍ଡରେ ବସାଇ ଥାଆନ୍ତେ । ଗୋଟିଏ ଟେରିଲିନ ସୁଟ ଅଲବତ ପ୍ରେଜେଣ୍ଟ କରିଥାଆନ୍ତେ । ମୋର ଜଣେ ଫ୍ରେଣ୍ଡ ସେ ବହିଟିକୁ ନେଇଯାଉଥିଲା । ତାକୁ ଦେଖିବାମାତ୍ରେ ବଡ ରାସ୍ତା ଉପରେ ଲମ୍ବ ହୋଇ ତା ଗୋଡତଳେ ପଡ଼ି ବହିଟି ତିନି ଦିନ ପାଇଁ ମାଗିଲି । ସେ କହିଲା—ହେଃ ଗୋଟିଏ ବହିଟା ପାଇଁ ବଡ ରାସ୍ତାରେ ନିଜ ଇଜ୍ଜତ ମହତ ବୁଡ଼ାଉଛୁ ? ମୁଁ କହିଲି—ମୋ ଆ[illegible]ରେ ସେ ବହିଟା ମାମୁଲି ବହି ନୁହେଁ, ସେ ଏକ ଅମୂଲ୍ୟ ଜହରତ —ଏକ କୋହିନୂର । ତା ପାଇଁ ମୁଁ ତୁଚ୍ଛ ଇଜ୍ଜତ ମହତ କଥା ଛାଡ଼ିଦେଉଥାଉ, ମୋର ପୈତୃକ ସମ୍ପତ୍ତି ଓ ପ୍ରାଣ ମଧ୍ୟ ତ୍ୟାଗ କରିବାକୁ ପ୍ରସ୍ତୁତ । ମୋତେ ନ ଦେଲେ ମୁଁ ଜୀବନ ହରେଇବି । ସାଙ୍ଗଟି ବହିଟି ଦେଇ ଦେଲା । ସନ୍ଧ୍ୟା ଲାଗିଛି, ତମକୁ ମିଛ’ ମୋତେ ସତ, ଦୁଇଦିନ ଆଉ ଗୋଟାଏ ରାତି ଲାଗି ଅଖିଆ ଅପିଆ ଅନିଦ୍ରା ରହି ବହିଟାକୁ ଏକ ନିଶ୍ୱାସକେ ସାରିଦେଲି । ସତେ, ସେ ବହିରୁ ଯେଉଁ ଅମୃତ ପାଇଲି ତା ଆଗରେ ଘିଅ ତରକାରୀ କି ରୁଚେ ? ପଢ଼ିଲାବେଳେ ମୋତେ ଲାଗୁଥାଏ ସତେ କି ଯେପରି ମୁଁ ଏକ ପରି ରାଇଜରେ ଧୂଳିକଣ ରାଜକୁମାର ହୋଇ ବୁଲୁଛି । ସେ ବହିକୁ କମ୍ ସେକମ୍ ପାଞ୍ଚ ଥର ପଢ଼ି ନେଇ ଫେରାଇଦେଲି । କି ରାମାୟଣ, କି ମହାଭାରତ, କି ଭାଗବତ ସବୁତକ ଶାସ୍ତ୍ରୀଙ୍କ ସୂର୍ଯ୍ୟ ତୁଲ୍ୟ ବହି ପାଖରେ ଜକୁଜକୁଆ ପୋକ । ବହି ଖଣ୍ଡିକ ପଢ଼ି ଜୀବନରେ ପୂର୍ଣ୍ଣତା ଆସି ଯାଇଛି କହିଲେ ଚଳେ—ଆହା ଶାସ୍ତ୍ରୀ ତୁମେ ଅମର ।”

ଗେଉଡ଼ଦାସଙ୍କ ମନ ସେତେବେଳେ ଗୋଳେଇ ଘାଣ୍ଟି ହେଉଥାଏ ।

ସେ ପଚାରିଲେ—“ହଉ ହେ ସାଙ୍ଗିଆଟା ତ ଶାସ୍ତ୍ରୀ ବୋଲି କହୁଚ, ସେ କଣ ଜଣେ ଓଡ଼ିଆ ?”

ଟୋକାଙ୍କ ଉପରେ ଯେମିତି ବଜ୍ର ଟୋକେଇଏ ଫୋପାଡ଼ି ଦେଲା । ସମସ୍ତେ ଏକ ସ୍ୱରରେ ଚଲେଇ ଉଠିଲେ—"ନାସ୍ତି ନାସ୍ତି, ଇଏ ଶାସ୍ତ୍ରୀଙ୍କୁ କହିବ ଓଡ଼ିଆ? ଛି, ଛି, ଛି, ରାମଚନ୍ଦ୍ର ମହାପ୍ରଭୁଙ୍କୁ କହିବ ରାମା ବାଉରୀ?"

ଗେଣ୍ଡୁ ଦାସ ସମସ୍ତଙ୍କୁ ଶାନ୍ତ କରାଇ ପୁଣି କହିଲେ—ତେବେ ସେ ଜାତିରେ କଣ?"

ସବୁ ନଳୀପେଣ୍ଟିଆ ଓ ଲମ୍ବାକଲଆମାନେ ପରସ୍ପର ମୁହଁକୁ କିଛି ସମୟ ଚାହିଁ ରହିଲେ । ତାପରେ ଜଣେ ଲମ୍ବାକଲଆ ହାତ ହଲାଇ ଆରମ୍ଭ କରଦେଲା "ତାଙ୍କୁ କୌଣସି ଜାତି ବା ଦେଶର ଗଣ୍ଡି ଭିତରେ ଆବଦ୍ଧ କରିବା ଅତି ଖରାପ କଥା । ତାଙ୍କର ଜାତି ହେଉଛି ଲେଖକ ଓ ଜନ୍ମସ୍ଥାନ ହେଉଛି ପୃଥିବୀ । ବାସ ଏଥିରୁ ତାଙ୍କୁ ସଂକୀର୍ଣ୍ଣ କରାଯାଇ ନ ପାରେ । ସେ ମହାତ୍ମା ସବୁ ଜାତିର ସବୁ ଦେଶର । ପୃଥିବୀ ଓ ମଣିଷ ଜାତି ତାଙ୍କ ପାଇଁ ଗୌରବାନ୍ୱିତ ହୋଇଛି ।"

"ସେ କଅଣ ଏମିତିଆ ବଡ଼ିଆ ବହିଟାଏ ଲେଖିଛନ୍ତି?"

"ନିଶ୍ଚୟ, ତା ହୋଇ ନ ଥିଲେ ସାରା ପୃଥିବୀ କଅଣ ଭୁଲ୍‌ଟାରେ ତାଙ୍କୁ ପୂଜା କରୁଥାଆନ୍ତା । ସେ ପୁସ୍ତକଟି କାଳଜୟୀ । ପରିପୂର୍ଣ୍ଣ ଜ୍ଞାନର ଭଣ୍ଡାର ଆଗାମୀ ହଜାର ବର୍ଷ ପାଇଁ ଏକ ଅଙ୍ଗୁଳି ନିର୍ଦ୍ଦେଶ । ଆଃ ବହି ଖଣ୍ଡେ ତ !"

"ଏତେ ସୁନ୍ଦର ବହି ! ହାୟ ହାୟ ମୁଁ ଯାହା ପଢ଼ିପାରିଲି ନାହିଁ । ସେ ବହି ଖଣ୍ଡିଏ କୌଣସିମତେ ସଂଗ୍ରହ କରି ପଢ଼ିବି । ଆଚ୍ଛା ସେ ବହି ନାଁ'ଟି କଣ କହିଲେ ମୁଁ ଟିପିନିଏ ।

ଲମ୍ବାକଲଆ ଓ ନଳୀପେଣ୍ଟିଆମାନେ ପୁଣି ଆରପର ମୁହଁ ଚାହାଁ-ଚାହିଁ ହେଲେ । ଜଣେ କହିଲା—"ହ ସେ ବହି ନା ହେଉଛି—ଆରେ ସେ ଇୟେମ, ଓଃ ଜିଭ ଆଗରେ ଅଛି, ଅରେ ସେ ନାଆଁଟା ହେଉଛି—ହେଉ ଏତେ ଜଣାଶୁଣା ନାଆଁଟା, ଏମିତି ବେଳେ ବେଳେ ହୋଇଥାଏ ।

ତୁମର ଅତି ଆପଣାର ସାଙ୍ଗ ନାଆଁ ବି ବେଳେ ବେଳେ ଜିଭ ଆଗରେ ଥାଇ ବି ପଦାକୁ ବାହାରେ ନାହିଁ । ଏଇଟା ଗୋଟାଏ ସାମୟିକ ମସ୍ତିଷ୍କ କ୍ରିୟାର ବିରତି ମାତ୍ର । ଯେପରି ଟେଲିଫୋନ ଲାଇନ ବିକଳ ହୋଇଗଲେ ଆସୁଥିବା ସମ୍ବାଦଟି ବିକଳ ସ୍ଥାନପାଏ ଆସି ଅଟକିଯାଏ ଓ ଆଉ ଗନ୍ତବ୍ୟ ସ୍ଥାନ ପର୍ଯ୍ୟନ୍ତ ଯାଇପାରେନା ଏ ଘଟଣାଟି ଠିକ୍ ସେମିତି । ସ୍ମରଣ କେନ୍ଦ୍ରରୁ ନାଆଁଟି ଆସି ବିକଳ ସ୍ନାୟୁପାଖରେ ହିଁ ଅଟକି-ଯାଏ, ଜିଭ ଆଗକୁ ଯାଏ ନାହିଁ । ଜିଭଟି ବିଚରା, ସଙ୍କଟଜନକ ଅବସ୍ଥା ବେଳେ ଉପରୁ କୌଣସି ପ୍ରକାର ନିର୍ଦ୍ଦେଶ ପାଇପାରୁ ନ ଥିବା ତଳିଆ କର୍ମଚାରୀ ଛଟପଟ ହୋଇ ଚୁପ୍ ରହେ । କଅଣ ମୁଁ ଠିକ୍ କହୁନି ?

ଜଣେ ନଳପେଣ୍ଡିଆ କହି ଉଠିଲା—"ରଖ ରଖ ତୋ ବିଜ୍ଞାନ । ଡାକ୍ତରୀ ପଢିବାକୁ ଯାହା ନ ଗଲୁ !"

"କଅଣ ମୋ ସଙ୍ଗରେ ଥଟ୍ଟା, ଭାରି ସାହସ ତ ଦେଖୁଛୁ !"

"ହାଣ୍ଡିରେ ପୂରେଇ ଫାଣ୍ଡିକୁ ନେଇଯିବୁ ପରା !"

ଏତେ ଧମକ !"

"ଆରେ ଧମକଟା ଏମିତି ଜନ୍ମହେଲା ଦିନୁ ଅଛି । ତୁ କଅଣ ହଟେଇ ଦେବୁ କି ? ଘର ଗୋଆବ ତ !"

ନଳପେଣ୍ଡିଆ ଓ ଲମ୍ବାକାନଆମାନେ ଜାହାଁପୋଲ ଶାସ୍ତ୍ରୀଙ୍କ ବିହର ନାଆଁକୁ ଛାଡ଼ିଦେଇ କୁରୁକ୍ଷେତ୍ରର ସମର ସଜା ଆଡେ ଆଗେଇଲେ । ଠିକ ସେତିକବେଳେକୁ ବିଜୁଳିଟା ବି ଲିଭିଗଲା । ଗଣ୍ଡଗୋଳ ଭିତରେ କିଏ କାହାକୁ ଚିହ୍ନୁଛି । ଦଳେ ପେଲା ପେଲି ହୋଇ ଗେଡ଼ୁ ଦାସଙ୍କ ଉପରେ ପଡ଼ିଲେ । ହଁ । ହଁ ।, ସେ ଆମ ଅତିଥି କହି ଦି ଚାରିଜଣ ତାଙ୍କୁ ଲୁଣ୍ଠେଇ ଧରିଲେ ଓ ବହୁ କଷ୍ଟରେ ତାଙ୍କୁ ପଦାରେ ନେଇ ଛାଡ଼ିଲେ । ସେ ଘରକୁ ଫେରି ଦେଖିଲେ ତାଙ୍କ ପକେଟରୁ ମନିବ୍ୟାଗଟି ଅନ୍ତର୍ଦ୍ଧାନ । ମନେ ମନେ ଭାବିଲେ—ବଦମାସ ପକେଟ୍ମାରୁ ଦଳ, ଲେଖକକୁ ଜାଣି ନାହାନ୍ତି । ବିହ ନାଆଁ ବି ଜାଣି ନାହାନ୍ତି, ଅଥଚ ବିହ ଉପରେ ଆଲୋଚନା କାହିଁରେ କଣ । ଅପଦାର୍ଥେ ଅନୁଷ୍ଠାନର ନାଆଁ ପୁଣି ଦେଇଛନ୍ତି—ଲଣ୍ଟେକ ସାହ୍ୱଦର ।

—ଃ୦ଃ—

# ଲେଖକଙ୍କ ଜୁଲାପ

ସମସ୍ତେ ଏକ ସ୍ୱରରେ ରଡ଼ି ଦେଲେ—"ହୁଙ୍କାର ପତ୍ରିକାର ପୂଜାସଂଖ୍ୟାଟିଏ ଅଲବତ କାଢ଼ିବାକୁ ହେବ । ମୁଣ୍ଡରେ ଗୋଟିଏ ହେଓଟି ଧଳା ବାଳ ଉପୁଜେଇ ଥିବା ଉପଦେଷ୍ଟା ବାବୁ ବଇଷମ ସାମଲ କହିଲେ "ହୁଁଃ । ତମେ ଟୋକା ଟାକଳିଆ ଦଳ ସବୁବେଳେ ଆଖିକାନ ବୁଜି ଦେଇ, କଣ୍ଟାବାଡ଼ ନ ମାନି ହୁ'କରି ଆଗକୁ ଷେପିଯାଅ । ପଛକେ ଗୋଡ଼ହାତ ଛିଣ୍ଡୁ ବା ମୁଣ୍ଡ ଫାଟୁ । ଏଗୁଡ଼ାକ ଖାଲି ହୁଣ୍ଡାମି ଛଡ଼ା ଆଉ କିଛି ନୁହେଁ । କରେ 'ହୁଙ୍କାର'ଟା ଅଲବତ ବାହାରିବ ବୋଲି ତ କହିଦେଲ । ହେଇରେ କେମିତି ବାହାରିବ ସେକଥାତ ମୁଣ୍ଡରେ ପୂରେଇଲ୍ ନାହିଁ । ହେଇରେ ନିଆଁ ଗିଳା ଦଳ । କିଏ ଦୁଇଶହ କିଏ ତିନିଶହ ପୃଷ୍ଠାର ପୂଜା ସଂଖ୍ୟା ସବୁ କାଢ଼ିବେ । ତମେତ ଖୁବ କମରେ ୧୦୦ ପୃଷ୍ଠାର କାଢ଼ିବ । କେବଳ କାଗଜ ଓ ଛପାଖର୍ଚ୍ଚରେ ତ ଦେଡ଼ ହଜାର ଟଙ୍କା ଠୋପଟାସ୍ ଖର୍ଚ୍ଚ ହୋଇଯିବ । ଆଉ ଆଉ କଥା ପଛକୁ ଅଛି । ତମ ପୋଷ୍ଟାଲ ସେଭିଙ୍ଗ୍‌ସ୍ ବ୍ୟାଙ୍କରେ ମାତ୍ର ଅଛି ଶହେ ପାଞ୍ଚଟଙ୍କା ପଞ୍ଚସ୍ତରି ପଇସା ।

"ଯଦି ହଜାର ଖଣ୍ଡେ ଟଙ୍କା ଥାଆନ୍ତା ତେବେ ଭାବୁଛି ତୁମେ ସମସ୍ତେ କହିଥାନ୍ତ ଏହି ସହରରେ ଅଲବତ୍ ଗୋଟିଏ ଜମି କିଣି, ଗୋଟାଏ ହବଗ୍ଠ ଦୋମହଲା କୋଠା ବନେଇ ଗୋଟିଏ ରୋଟେରି ପ୍ରେସ୍ ବସେ-ଦେବାକୁ ହବ, ହବ, ହବ, । ଆଚ୍ଛା ଅଲବତ ପତ୍ରିକା କାଢ଼ିବାକୁ ତ କହିଲ । ଏବେ ଶୂନ୍ୟରୁ କେମିତି ପତ୍ରିକା କାଢ଼ିବ କହିଲଦେଖି ।"

ଜଣେ ଲମ୍ବାକଳିଆ, ନଳିପେଣ୍ଡିଆ ଭେଣ୍ଡିଆ ବଚନୀତ ହୋଇ-ପଡ଼ି କହିଲେ "ମୁଁ ଜାଣେ ପର ଆପଣ ଖାଲି ପଛଆଡ଼ୁ ଟାଣିବେ । ବୁଢ଼ା

ବୁଢ଼ାମାନଙ୍କର କାମ ହେଲା ସବୁ କାମରେ ଟୋକା ଟାକଳିଆଙ୍କୁ କେବେ ହେଲେ ଆଗେଇ ଦେବେନି ।"

"କେରେ ଆଖି ମେଲିକରି ସିନା ଆଗେଇଲେ ହେବ । ତମେ ସମସ୍ତେ ତ ଆଖିବୁଜି ଆଗେଇବ । ଆମେ ଯେଉଁଠି ଦେଖିବୁ ଆଗରେ ଗାତଟାଏ କି ଢିମାଟାଏ ଆଉ ତମେ ସମସ୍ତେ ଆଖି ବୁଜି ଅନ୍ଧଧୁନିଆ ହେଉଚନ୍ତି, ସେଠି ତମକୁ ପଛରୁ ଟାଣିଧରିବୁ ନାହିଁ ତ ଆଉ କଅଣ ଖଣ୍ଡିଆ ଖାବରା ହେବାକୁ ଛାଡ଼ିଦେବୁ ? ଆଚ୍ଛା କହିଲ ଭଲ ମାଳପଣି ତ ଏତିକି, କାଗଜ ଦାମ, ଛପା ଖର୍ଚ୍ଚ ଆଣିବ କୁଆଡ଼ୁ ?"

"କଅଣ ଆଜ୍ଞା ଆପଣ ଯେ କହୁଛନ୍ତି ତା'ର ଆଦ୍ୟ ଅନ୍ତ ମୁଁ ପାଉନି ଆଜ୍ଞା ଦେଖନ୍ତୁ, ଯେ ପର୍ଯ୍ୟନ୍ତ ଆମର ଏ ଲମ୍ବାକଲି, ନଳିହେଣ୍ଟ ଆଉ ଚୁଚୁନ୍ଦ୍ରାବଦନୀ ଯୋଡ଼ା ଥିବ, ସେତେଦିନଯାଏ ପୃଥିବୀରେ ଆମକୁ ଅପ୍ରାପ୍ତି ହୋଇ କିଛି ଜିନିଷ ରହିବ ନାହିଁ । ଆପଣ ଖାଲି ଲେଖା ବାଛନ୍ତୁ ଆଉ ସବୁ କାମ ଆମ ଜିମାରେ ଛାଡ଼ି ଦିଅନ୍ତୁ ।" × ×

× × ଲମ୍ବାକଲିଆ ଫଉଜଙ୍କୁ ଧରି ବଡ଼ ଲମ୍ବାକଲିଆ ନାଣ୍ଡିଆ ଦାସ ପରିବାର ନିୟନ୍ତ୍ରଣ ନିର୍ଦ୍ଦେଶକଙ୍କ ଅଫିସ ଭିତରକୁ ପଶିଗଲେ ପିଅନଟି 'ହୁକୁମ ନାହିଁ' କହି ବାଟ ଓଗାଳୁ ଥିଲା । ନାଣ୍ଡିଆ ସାଫ୍ ସାଫ ଶୁଣେଇ ଦେଲା—"ଆରେ ହଟ ହଟ, ଆମେ ସବୁଠି ହୁକୁମ ଜାରି କରୁଛୁ, ଆମକୁ ଫେର ହୁକୁମ ଦେବ କିଏ ?"

ଦଶବାର ଜଣ ଲମ୍ବାକଲିଆ ଠେଲି ପେଲି ଭିତରକୁ ପଶିଯାଇ ନିର୍ଦ୍ଦେଶକଙ୍କ ଆଗରେ 'ନମସ୍କାର ଆଜ୍ଞା'ର ସମ୍ମିଳିତ ଧ୍ୱନି ଛୁଟେଇ ଦେଲେ । ନିର୍ଦ୍ଦେଶକଙ୍କ ତଣ୍ଟି ଶୁଖିଆସିଲା, ପାଟିରୁ କଥା ବାହାରିଲା ନାହିଁ । କି କି ସମ୍ଭାବ୍ୟ ଅପରାଧ କରିଥାଇ ପାରନ୍ତି, ସେ ବିଷୟ ମନେ ମନେ ଅଣ୍ଡାଳିବାକୁ ଲାଗିଲେ; କିନ୍ତୁ କିଛି ପାଇଲେ ନାହିଁ । ମନ ଭିତରେ ବୋଲିବା ଲାଗିଲେ, "ପ୍ରଭାତେ ଯଃ ସ୍ମରେନ୍ନିତ୍ୟଂ ଦୁର୍ଗା ଦୁର୍ଗା କ୍ଷରଂଦ୍ୱୟମ୍, ଆପଦଂତସ୍ୟ ନଶ୍ୟନ୍ତି ତମଃ ସୂର୍ଯୋଦୟେଯଥା ।" ତାଙ୍କୁ ଏପରି ନିର୍ବାକ୍ ହୋଇ ବାଲୁ ବାଲୁ କରି ସେମାନଙ୍କ ଆଡ଼େ ଚାହିଁ

ଥିବାର ଦେଖି ନାଣ୍ଡିଆ କାର୍ଯ୍ୟସିଦ୍ଧ ଅବଶ୍ୟ ହେବ ବୋଲି ଉତ୍ତରରେ ନେଇ 'ହୁଙ୍କାର' ପତ୍ରିକାର ଖଣ୍ଡିଏ ପଞ୍ଚସଂଖ୍ୟା ବଢ଼େଇ କହିଲା 'ଆଜ୍ଞା ଆଜିର ଗଣ୍ଡଗୋଳିଆ ଯୁଗରେ ଏଇ ପତ୍ରିକା ହିଁ ସବୁ ପ୍ରକାର ସାମାଜିକ ଦୋଷ ଦୁର୍ବଳତା ହଟେଇଦେବାକୁ ସମର୍ଥ । ଏ କାର୍ଯ୍ୟରେ ଆମେ ଆପଣଙ୍କ ପୃଷ୍ଠପୋଷକତା କାମନା କରୁଛୁ । 'ହୁଙ୍କାର' ମାଧ୍ୟମରେ ଆପଣ ଜନତାକୁ ଯେଉଁ ନିର୍ଦ୍ଦେଶନା ଦେବେ ତାହା ଅକ୍ଷରେ ଅକ୍ଷରେ ପାଳିତ ହେବ ।

ନିର୍ଦ୍ଦେଶକ ଟିକିଏ ଆଶ୍ୱସ୍ତ ହେଲେ, ଅନୁଚ୍ଚ; ଗଳାରେ କହିଲେ "ହୁଁ, ନାମକରଣରୁ ଅନ୍ତତଃ ବୁଝାପଡ଼ୁଛି । ତେବେ—"

"ଆଜ୍ଞା ତେବେ ଫେବେ ର ପ୍ରଶ୍ନ ଉଠାଉଛନ୍ତି କାହିଁକି ? ଆପଣ ଗୋଟିଏ ବିଜ୍ଞାପନ ଦେବେ ନି ସେ ଗୋଟିଏ ଗୁଳିରେ ଯୋଡ଼ାଏ କୁକୁଡ଼ା ଶିକାର କରିବେ । ପ୍ରଥମରେ ଆପଣ ନିଜ ବକ୍ତବ୍ୟକୁ ଲୋକଙ୍କ ମୁଣ୍ଡରେ କଣାକରି ଭର୍ତ୍ତି କରିଦେବେ, ଦ୍ୱିତୀୟରେ ଓଡ଼ିଆ ସାହିତ୍ୟର ଅଭିବୃଦ୍ଧିରେ ଏକ ସକ୍ରିୟ ଅଂଶ ଗ୍ରହଣ କରିବେ ।" ନାଣ୍ଡିଆ କଥା ନ ସରୁଣୁ ଅନ୍ୟମାନେ ଉପରେ ପଡ଼ାପଡ଼ି ହୋଇ ଅନୁରୋଧମାନ ବୋଲୁଅ ଫୋପାଡ଼ିଲା ପରି ଦୁଲଦାଲ୍ ନିର୍ଦ୍ଦେଶକଙ୍କ ଉପରକୁ ଫିଙ୍ଗିଲେ ।

ଜଣେ କହିଲା—"ଆପଣମାନେ ଓଡ଼ିଆ ସାହିତ୍ୟକୁ ନ ଟେକିଲେ ଆଉ ଟେକିବ କିଏ ?" ଆଉ ଜଣେ କହିଲା—"ଆମେ ଟଙ୍କା ନେଇ କିଛି ତେଲ ଲୁଣରେ ଖର୍ଚ୍ଚ କରିବୁନି । ପ୍ରତ୍ୟେକଟି ପଇସା ଓଡ଼ିଆ ସାହିତ୍ୟ ବିକାଶରେ ବ୍ୟୟିତ ହେବ ।" ଆଉ ଜଣେ—କହିଲା ଏ ସବୁ ସାହିତ୍ୟର ବିକାଶମୂଳକ କାର୍ଯ୍ୟରେ ଆପଣ ଆମ୍ଭମାନଙ୍କୁ ଡାକି ବିଜ୍ଞାପନ ଦେବାର କଥା । ଆମେ ଅବଶ୍ୟ ସେ ପ୍ରତି ଅପେକ୍ଷା ନ କରି ସିଧା ସଳଖ ଆପଣଙ୍କ ପାଖକୁ ଚାଲି ଆସିଲୁ ।" ଆଉ ଜଣେ କହି ଉଠିଲା—"ଆମେ ଆମ କର୍ତ୍ତବ୍ୟ ପାଳନ କରୁଛୁ । ଏବେ ଆପଣ ଆପଣଙ୍କର କର୍ତ୍ତବ୍ୟ ପାଳନ କରନ୍ତୁ ।"

ଲମ୍ବାକଲିଆ ଫଉଜଙ୍କ କର୍କଶଧ୍ୱନିରେ ନିର୍ଦ୍ଦେଶକ ବିଚଳିତ ହୋଇଉଠିଲେ । ତାଙ୍କୁ ଉତ୍ତର ଦେବାକୁ ସମୟ ମିଳୁନି । ଜଣକ ପରେ

ଜଣେ ତାଙ୍କ ଉପରକୁ କଥା ଫୋପାଡ଼ିବାରେ ଲଗିଛନ୍ତି । ବିରକ୍ତ ଓ ବିବ୍ରତ ହୋଇ ଶେଷରେ ସେ ବଡ଼ ପାଟି କରି କହିଲେ—"ହଉ ଗୋଟିଏ ବିଜ୍ଞାପନ ତ ନେବ, ଏତେ ହଲ୍ଲା କରୁଛ କାହିଁକି ? ଦରଖାସ୍ତ ଓ ବିଜ୍ଞାପନହାର ଦିଅ ।"

ଏତକ ଦେବା ସଙ୍ଗେ ସଙ୍ଗେ ଲମ୍ବାକଲିଆ ଫଉଜ ନିର୍ଦ୍ଦେଶକଙ୍କୁ ତାରିଫ୍ କରିବା ଆରମ୍ଭ କରିଦେଲେ । ତାଙ୍କପରି ଜଣେ ସାଧୁ ସଚ୍ଚରିତ୍ର, କର୍ମଦକ୍ଷ, ନିଷ୍ଠାପର ଦେଶଭକ୍ତ ସାହିତ୍ୟ ପୋଷକ ନିର୍ଦ୍ଦେଶକ ଓଡ଼ିଶାରେ କାହିଁକି, ସାରା ଭାରତବର୍ଷରେ ବିରଳ ।

ନିର୍ଦ୍ଦେଶକଙ୍କ ମୁଣ୍ଡ ସେତେବେଳେ ଘୂରିବା ଆରମ୍ଭ କଲାଣି । ସେ ଭାବିଲେ ଶେଷରେ ଛୁଆମାନଙ୍କ ପ୍ରଶଂସାପତ୍ର ଗିଳିବାକୁ ପଡ଼ିଲା । ହାୟ ଭଗବାନ, ଆଜି କାହା ମୁହଁ ସକାଳେ ଚାହିଁଥିଲି କେଜାଣି । ଚଟାପଟ ସେ ଗୋଟିଏ ପୂର୍ଣ୍ଣ ପୃଷ୍ଠାର ବିଜ୍ଞାପନ ପାଇଁ ଅର୍ଡ଼ର ଦେଇ ବିଦା କରିଦେଲେ । ତା'ପରେ ଗିଲାସେ ପାଣି ପିଇ ଅଧଘଣ୍ଟାଏ ସ୍ଥିର ହୋଇ ବସି ରହିଲେ । ଲମ୍ବାକଲିଆ ଫଉଜ ଯେ ଏତେଶୀଘ୍ର ତାଙ୍କୁ ଛାଡ଼ି ଚାଲିଯାଇଛନ୍ତି, ସେଥିପାଇଁ ଭଗବାନଙ୍କ ପାଖରେ କୃତଜ୍ଞତା ଜଣାଇଲେ ।

ଆନନ୍ଦ କଳରବ ଭିତରେ ପରିବାର ନିୟନ୍ତ୍ରଣ ନିର୍ଦ୍ଦେଶାଳୟ ତ୍ୟାଗ କଲାବେଳେ, ନାଣ୍ଟିଆ କହିଲା—"ଚାଲିବେ ଏଥର ଯିବା ସ୍ୱଳ୍ପସଞ୍ଚୟ ଅଫିସ । ଆମର ବିଜୟ ସୁନିଶ୍ଚିତ । ମୁଁ କହୁଛି ପରା ଯେତେଦିନଯାଏ ଆମର ଲମ୍ବାକଲି ଓ ନଳୀଯେଣ୍ଟ ଠିକ ଥିବ ସେ ପର୍ଯ୍ୟନ୍ତ ଆମେ ସବୁଠାରେ ଜିତାପଟ ନେଉଥିବୁ ।"

× × ×

ଇଷ୍ଟର୍ଣ୍ଣ ଏଜେନ୍‌ସି ଭିତରକୁ ପଶିଯାଇ ନାଣ୍ଟିଆ କହିଲା "ଦେଖନ୍ତୁ ମଧୁବାବୁ ! ପୂରା ପୃଷ୍ଠାର ଛଅଟା ସରକାରୀ ବିଜ୍ଞାପନ ପାଇଛୁ । ଠୋ ପଚାଶ ତିନି ହଜାର ଟଙ୍କା ଏଥିରେ ମଳିଧୂଳି ନାହିଁ । ବେସରକାରୀ ବିଜ୍ଞାପନ ବି ଦଶଟା ପୁରା ଆଉ ୧୮ଟା ଅଧା ପାଇଛୁ । ଏହାଛଡ଼ା ବନ୍ଦିରୁ

ଖୁବ କମରେ ଶହେ ହଜାର ଟଙ୍କା ଥିଆ । ଏତେ ନିଶ୍ଚିତ ଅବସ୍ଥାରେ ଆପଣ ଯଦି ଆମକୁ କାଗଜ ଧାର ନ ଦିଅନ୍ତି ତେବେ ଆପଣଙ୍କର କ୍ଷତି ହିଁ ହେବ । ଆପଣଙ୍କ ବାକିଆ ଟଙ୍କାଟା ପାଇବା ଲାଗି ଅଧିକ ବର୍ଷେ କାଳ ଅପେକ୍ଷା କରିବାକୁ ପଡ଼ିବ, ଧାର ଦେଲେ ଆରମାସରେ ପୂର୍ବବାକୀ ଓ ଏବର ବାକୀ ସବୁ ଚୁକ୍ତି ହୋଇଯିବ । କାଗଜ ଧାର ଦିଅନ୍ତୁ । ଏଥିରେ ଲାଭ ଛଡ଼ା କ୍ଷତିର ପ୍ରଶ୍ନ ନାହିଁ ।”

ମଧୁବାବୁ ବିଜ୍ଞାପନଗୁଡ଼ିକ ଲେଉଟାଇ ଦେଖିଲେ ସତକୁ ସତ, ପରିବାର ନିୟନ୍ତ୍ରଣ, ସ୍ୱଳ୍ପ ସଞ୍ଚୟ, ଜଙ୍ଗଲ, ଫିସେରି, ଫୁଡ୍ କର୍ପୋରେସନ ଶିଳ୍ପ ବିଭାଗ, ଗ୍ରାମମଙ୍ଗଳ ବିଭାଗ, ପର୍ଯ୍ୟଟନ ବିଭାଗ, ସାହିତ୍ୟ ଏକାଡେମି, ସାଂସ୍କୃତିକ ବିଭାଗ, ଜୀବନବୀମା କର୍ପୋରେସନ, ପଞ୍ଚାୟତ ଇଣ୍ଡଷ୍ଟ୍ରି ଏବଂ ବେସରକାରୀ ବହୁ ବ୍ୟାଙ୍କର ଚାଳିଶ ବିଜ୍ଞାପନ । ସେ ମନେ ମନେ ଭାବିଲେ ଏତେବେଳେ କାଗଜ ଧାରରେ ଦେଲେ ଏ ଟଙ୍କା ତ ମିଳିବ, ବାକିଆ ଟଙ୍କାଟା ବି ମିଳିବ । ନଦେଲେ ବାକି ଟଙ୍କାଟା ବୁଡ଼ିଯିବା ସୁନିଶ୍ଚିତ । ପାଟି ଖୋଲି କୁନ୍ଥେଇ କୁନ୍ଥେଇ କହିଲେ—“ମୁଁ କଅଣ ଦବାକୁ ମନା କରୁଛି, ଦେଉଥିଲେ ନେଉଥିଲେ ଧାର ଦେବାକୁ କଏ କାହିଁକି ମନା କରିବ । ନିଅନ୍ତୁ କେତେ କାଗଜ ନେବେ ନିଅନ୍ତୁ ।

ନାଣ୍ଡିଆ ଦଳର କୃତିତ୍ୱ ଦେଖି ବଇଷମ ସାମଲେ ହାଉଳି ଖାଇଲେ । ନାଣ୍ଡିଆ ପିଠିରେ ହାତ ମାରି କହିଲେ—“ନାଣ୍ଡିଆ ମୁଁ ଦିବ୍ୟଚକ୍ଷୁରେ ଦେଖିପାରୁଛି, ଅବିଳମ୍ବେ ତୁ ଏ ରାଜ୍ୟରେ ମୁଖ୍ୟମନ୍ତ୍ରୀ ବନିଯିବୁ ।”

ନାଣ୍ଡିଆ ସାଙ୍ଗେ ସାଙ୍ଗେ ପାଲଟା ଉତ୍ତର ଦେଲା—“ମୁଁ ମୁଖ୍ୟମନ୍ତ୍ରୀ ହେବା ସଙ୍ଗେ ସଙ୍ଗେ ଆପଣଙ୍କୁ ସାହିତ୍ୟ ଏକାଡେମିର ସେକ୍ରେଟେରୀ କରିଦେବି ।”

ଆଉଜଣେ ଉଠିପଡ଼ି କହିଲା—“ତେବେ ପ୍ରତି ମାସରେ ଅନ୍ତତଃ ସାହିତ୍ୟ ଏକାଡେମିରୁ ଗୋଟାଏ ଗୋଟାଏ ବିଜ୍ଞାପନ ଅବଶ୍ୟ ମିଳିବ । ଆମ ‘ହୁଙ୍କାର’ ପତ୍ରିକା ଉଠିଲା ଜାଣ ।”

ବଇଷମ ସାମଲ ପୁଣି କହିଲେ—"ପୂଜାସଂଖ୍ୟା ବାହାରିବାରେ ଆଉ ସନ୍ଦେହ ନାହିଁ । ଏଥର ଲେଖା ଆଣ ।"

ଜଣେ ଫୁଟେ ଫୁଟେ ଉଞ୍ଚା ଗଦାଏ ବସ୍ତାନି ଆଣି ବଇଷମ ସାମଲଙ୍କ ଆଗରେ ଦୁମ୍ ଦାମ୍ କରି ଥୋଇଦେଇ କହିଲା—"ଏଥିରେ ଅଛି ଗପ, ପ୍ରବନ୍ଧ, କବିତା, ପତ୍ରିକାର କଞ୍ଚାମାଲ ଭିତରେ ଲେଖାଟା ସବୁଠାରୁ ଶସ୍ତା । ଦଶ-ବାଲି ଗାଡ଼ିଏ ଆଣିବାକୁ ଟଙ୍କା ଲାଗେ କିନ୍ତୁ, ବିନା ପଇସାରେ ଗାଡ଼ିଏ କଅଣ, ଦଶଗାଡ଼ି ଲେଖା ମିଳିବ, ଏବେ ଗୁଳୁଣିରେ ଚଳାଅ ।"

ବଇଷମ ସାମଲଙ୍କୁ ସେତିକ ଗୁଳୁଣିରେ ଚଳେଇବାକୁ ଦୂଇ ଗଣ୍ଡା ଦିନ ସମୟ, ଶହେ ତେରଟା ଗୁହାଳ ଓ ଦୁଇଟିଣ ସିଗାରେଟ ଲାଗିଗଲା । ବଚ୍ଛା-ବଚ୍ଛି ଶେଷରେ ସେ କହିଲେ—"ଯାହା ଆସିବାର ଆସିଛି । ଯାଅ ଲେଖକ ଘଣ୍ଟୋତ୍କଚଙ୍କ ଠାରୁ ଗୋଟାଏ ଗପ ନେଇ ଆସିବ ।

ଲେଖକ ଘଣ୍ଟୋତ୍କଚଙ୍କ ନାମ ଶୁଣି ସମସ୍ତଙ୍କର ମୁହଁ ଶୁଖିଗଲା । ନାଣ୍ଡିଆ କହିଲା—"ହେଃ, ସେ ଘୋଡ଼ାମୁହାଁର ନାଁ ଧରନା, ଆମେ ବନ୍ଧୁ ଆଗରୁ ତା ପାଖକୁ ଯାଇଥିଲୁ । ଦଉଡ଼ ଦଉଡ଼ ଚପଲ ତଳା ବଦଳେଇଲୁ ପଛକେ ତାଠୁଁ ଗୋଟାଏ ଲେଖା ମିଳିଲା ନାହିଁ । ଯେତେବେଳେ ଯାଅ ତା ମୁହଁରୁ ସେଇ ଗୋଟାଏ କଥା—'କଅଣ କରିବ, ଜଞ୍ଜାଳ ଭିତରେ ପଡ଼ିଛି, ଚିନ୍ତା କରିବାକୁ ଟିକିଏ ହେଲେ ଫୁରସତ ନାହିଁ । ଲେଖିବସିଲା ବେଳକୁ ନାନା ବାଧାବିଘ୍ନ ପହଞ୍ଚୁଛି, ମୋତେ କ୍ଷମାକର ।" ଆରେ ବାବୁ ଜଞ୍ଜାଳ ଯଦି ଏତେ ବେଶି, ଖାଉଛି କେମିତିକ, ହଗୁଛି କେମିତିକ ! ହେଃ ସେଇଟା ପାଖକୁ ଆଉ ଯିବାଲାଗି ଆମ୍ଭ ଡାକନି, ତାର ତ ଲେଖା କବଜ ହୋଇଛି । ସେମିତି କବଜ ହୋଇ ରହିଥାଉ ।"

ବଇଷମ ସାମଲ ଆଉ ଥୟ ହୋଇ ରହିପାରିଲେ ନାହିଁ, ପ୍ରବୋଧ ଦେଇ କହିଲେ, "ଆରେ ଏତେ ଏତେ କାମ କରିଗଲ ଏଇ ସାମାନ୍ୟ କଥାରେ ଧୈର୍ଯ୍ୟ ହରାଇ ବସୁଛ ! ଆରେ ତାର ଲେଖା କବଜ ହୋଇଛି ତ ସେଥିପାଇଁ ଗୋଟାଏ ଜୁଲାପ ଦରକାର । ବଇଦଠୁଁ ଗୋଟାଏ ଜୁଲାପ ନେଇ ଦେଇ ତ ପାରୁନ, ଖାଲି ଟିଙ୍ଗ୍ ଶୁଳିଆଙ୍କ ପରି ଟିଙ୍ଗ୍ ଟିଙ୍ଗ୍ ହେଲେ ଲାଭ କଅଣ ହେବ ।"

ନାଣ୍ଡିଆ ନିସ୍ପୃହ ଭାବରେ କହିଲା—"ଲେଖେଇ ଜଲପ କଥା ମୁଁ ତ ମୁଁ, ମୋ ବାପ ଅଜା ଚୌଦପୁରୁଷ କେହି ଶୁଣି ନ ଥିଲୁ। ଆପଣ ଯଦି ଜାଣିଥିବେ ତେବେ ଲେଖକ ଘଟୋତ୍କଚଙ୍କୁ ଖିଆନ୍ତୁ, ଆଉ ତାଙ୍କ ପାଇଖାନାରୁ ଲେଖାଟି ଗୋଟେଇ ଆଣନ୍ତୁ। ମୋ ଦେଇ ସେ କାମ ହୋଇ ପାରିବ ନି।"

ବଇଷମ ସାମଲେ ଟେବୁଲ ଉପରେ ବିଧାଟା ମାରି କହିଲେ, "ଠିକ୍ ଅଛି। ଜଲପ ଦେବା ଭାର ମୋ ଉପରେ। ବରଂ ଲେଖାଗୁଡ଼ାକ ପ୍ରେସକୁ ଦେଇ ଦିଅ। ମୁ ସାତ ଆଠଦିନ ବାଦ ଘଟୋତ୍କଚଙ୍କ ଲେଖା ନେଇ ଦେବି।"

ଗୁହାଳଙ୍କ ସୋଡ଼୍କ ନେଇ ସାରି ବଇଷମ ସାମଲେ ଗୋଟିଏ ସିଗାରେଟ୍ ଧରେଇଲେ। ତାପରେ ଗଳା ସଫ୍ କରି ଆରମ୍ଭ କଲେ—"ଜାଣିଲ ଘଟୋତ୍କଚ କାଲି ଉଟ୍କେଶ୍ରବା ସାହିତ୍ୟ ସଂସଦରେ ମୁଖ୍ୟତଃ ତମରି ଲେଖାର ଚର୍ଚ୍ଚା ହୋଇଥିଲା। ସତେ ଘଟୋତ୍କଚ ବାବୁ ତମ ଭାଗ୍ୟ ଭଲ ଦେଖ। ଏତେ ବଡ଼ ପ୍ରଶଂସାର ଜୁଆର କୌଣସି ଲେଖକ ଉପରେ ଏଥିପୂର୍ବରୁ ମାଡ଼ିଯାଇନ। ଓଃ! ପ୍ରଶଂସା. ମୀଳୁକୁଦର ସବୁ ସ୍ଲୁଇସ୍ ଯେମିତି ଖୋଲିଯାଇଥିଲା। ଜଣେ କହିଲେ ଯେ ପତ୍ରିକାଟିଏ ଦେଖିଲେ ସେ ଆଗ ଘଟୋତ୍କଚଙ୍କ ନାମ ଖୋଜନ୍ତି; ଥିଲେ ପତ୍ରିକାଟି କିଣନ୍ତି ଓ ଆଗ ତମ ଲେଖାଟି ପଢ଼ନ୍ତି। ନ ଥିଲେ ପତ୍ରିକାଟି ଫୋପାଡ଼ି ଦିଅନ୍ତି। ଆଉ ଜଣେ କହିଲେ—ଘଟୋତ୍କଚଙ୍କ ଲେଖା ଯଦି ତାଙ୍କ ହାବୁଡ଼ରେ ପଡ଼େ ତେବେ ଯେତେବଡ଼ ଝାଡ଼ା ତଲବ ଦେଖାଉ ପଛକେ ତାକୁ ପଢ଼ି ନ ସାରି ପାଇଖାନା ଯାଆନ୍ତି ନାହିଁ। ଆଉ ଜଣେ କହିଲେ—ବାସ୍ତବିକ ଓଡ଼ିଶା ବଡ଼ ଭାଗ୍ୟବାନ ଯେ ଘଟୋତ୍କଚ ଭଳି ଲେଖକଟିଏ ଏଠି ଜନ୍ମଗ୍ରହଣ କରିଛନ୍ତି। ଆଉ ଜଣେ କହିଲେ—ହେଲେ ଘଟୋତ୍କଚଙ୍କ ଦୁର୍ଭାଗ୍ୟ ଯେ ସେ ଏଠି ଜନ୍ମଗ୍ରହଣ କରିଛନ୍ତି, ତାଙ୍କ ପ୍ରତିଭାର ପୂଜା ଏଠି କିଏ କରୁଛି। ଆଉ କେଉଁ ରାଜ୍ୟ ହୋଇଥିଲେ କେଉଁ ଦିନଠାରୁ ପଦ୍ମଶ୍ରୀ ହୋଇସାରନ୍ତେଣି। ଜଣେ କିନ୍ତୁ କହିଲା ଯେ କେବଳ ଏଇଥି ଲାଗି ତମ କଲମ ଶୁଖି ଶୁଖି ଆସୁଛି। ଓଃ ଘଟୋତ୍କଚ କି ଜର୍ଦ୍ଦସ୍ତ! କେତେ ଭୋକିଲା ପାଠକ ତମ କଲମକୁ ଚାହିଁ ରହିଛନ୍ତି। ତମେ କିନ୍ତୁ

ନଅଙ୍କିଆଙ୍କୁ ଦୁଆର ମୁହଁରୁ ଘଉଡ଼ି ଦେଲା' ପରି ନିରବ କରି ଦେଉଛନ୍ତି—

'ଏତିକବେଳେ ଘଟୋତ୍କଚ ପଚାରିଲେ—ସେ ଲୋକଟି, କିଏ କହେ। ? ମୋ ଲେଖାରେ ବଡ଼ ଦରଦୀ ପାଠକ ପରି ଜଣାଯାଉଛନ୍ତି । କିଏ ସେ ଭଦ୍ର ବ୍ୟକ୍ତି ?"

ବଇଷମ ସାମଲେ ଉଁ ଉଁ ହୋଇ ଅଟକି ଗଲେ । ପୁଣି ଛେପ ଢୋକି କହିଲେ—ହଁ-ହଁ-ଏଇ ସେ ହେଉଛନ୍ତି—କଅଣ ତ ତାଙ୍କ ନାଆଁ—ଏଇମ ଏଠା ପୋଲିସ ସାହେବ । ସେ ସାହିତ୍ୟ, ବିଶେଷ କରି ତମ ଲେଖାର ଜଣେ ଉଚ୍ଚକୋଟିର ଭକ୍ତ । ତମ ଠିକଣା ଜାଣିଥିଲେ ସେ ଆସି ତମକୁ ଜୋରସୋରରେ ଲେଖିବାକୁ ଅନୁରୋଧ ଜଣାଇ ଥାଆନ୍ତେ । ତାଙ୍କର ଭାରି ଆଶା ଏଥର ସବୁ ପୂଜାସଂଖ୍ୟାମାନଙ୍କରେ ତମର ଲେଖା ସବୁ ଯେମିତି ବାହାରେ । ସେ 'ହୁଙ୍କାର' ପତ୍ରିକାର ଜଣେ ଆଗ୍ରହୀ ଗ୍ରାହକ । ସତ କହୁଛି ଘଟୋତ୍କଚ ବାବୁ ତମେ ନିତାନ୍ତ ପକ୍ଷେ 'ହୁଙ୍କାର'କୁ ଗୋଟିଏ ଲେଖାଦିଅ ।

କିଛିକ୍ଷଣ ଗୁମ୍ ହୋଇ ବସି ଘଟୋତ୍କଚ କହିଲେ "ଆଚ୍ଛା ହେଉ, ମୁଁ 'ହୁଙ୍କାର' ପାଇଁ ଲେଖାଟିଏ ଦେବି । ଠିକଏ ଡେରି ହେବ ।

ଘଟୋତ୍କଚଙ୍କ ମଣ୍ଡନ କରି ହୁଙ୍କାର ପୂଜାସଂଖ୍ୟା ବାହାରିଗଲା ବଇଷାମ ସାମଲ ନାଣ୍ଡିଆକୁ କହିଲେ କେମିତିଆ ଜଳ୍ପନ ?

ନାଣ୍ଡିଆ କହିଲା— ଜୁଲପଟା ଠିକ୍ ଯେ, ଟିକିଏ ମାତ୍ରାଧିକ୍ୟ ହୋଇଛି । ଭଗବାନ କରନ୍ତୁ ତାର ଅନ୍ୟ ଉପସର୍ଗ ନ ବାହାରୁ ।

'ହୁଙ୍କାର' ପତ୍ରିକା ଦେଖିବା ମାତ୍ରେ ଘଟୋତ୍କଚ ଗୋଟିଏ ସମସ୍ୟା ସମାଧାନ ସୂଚକ ସ୍ୱସ୍ତିର ନିଶ୍ୱାସ ମାରିଲେ । ଡେଉରିଗୁଡ଼ା ଅଟାରେ ଅପମିଶ୍ରଣ କରୁଥିବା ଥାନାରେ ଦେଇ ଇନସ୍‌ପେକ୍ଟର୍ ପାଖରେ କି ଅପଦସ୍ତ ନ ହୋଇଛି, ଆଜ ତାର ବଦଲା ନେବ । ତାର ପ୍ରତିଭା ପୂଜକ ପୁଲିସ ସାହେବଙ୍କୁ ସବୁକଥା କହି ଇନସପେକ୍ଟରଙ୍କୁ

ସବୁ-ଥା କହି ଇନସପେକଟରଙ୍କୁ ପ୍ରାନେ ଦେବ । ଯେଉଁଠି ରାଷ୍ଟ୍ର ଓ ଇନସ୍‌ପେକ୍‌ଟର ଭିତରେ ଥିବା ଗୁପ୍ତ ଦେଣ ନେଣ କଥା ଖୋଲି-ଦେବ । ଦେଖିବ ପିସ୍ତଲର କରାମତି ବଡ଼ କି କଲମର କରାମତି ବଡ଼ ।

ଦରଓ୍ୱାନକୁ ଟଙ୍କାଟିଏ ଦେଇ ସାହାବଙ୍କ ଖୁସ୍ ମିଜାସ ସମୟ ଠିକ୍ କରିନେଲା । ଗୁହ୍ମା ଖାଇ ସାର ସାହେବ ଆରାମ ଚଉକିରେ ବସି ସିଗାରେଟ୍ ଧୂଆଁ ଗୁଡ଼ଉଥିଲାବେଳେ ସେ ଧରୁ ନମସ୍କାରଟିଏ ଜଣାଇ ବଡ଼ ବିନମ୍ର ଭଙ୍ଗୀରେ କହିଲା—“ଆଜ୍ଞା ମୁଁ ହେଉଛି ଲେଖକ ଘଟୋତ୍କଚ ଶର୍ମା ।”

ମୁଁଖ ବକ୍ରିତ କରି ପୁଲିସ ସାହାବ ପଚାରିଲେ—“ଅଶ୍ଳୀଳ ଲେଖା ଲେଖି ଧରା ପଡ଼ିଛ କି ?”

“ଆଜ୍ଞା ନା-ନା-ମୋ ନାଆଁ ଘଟୋତ୍କଚ ଶର୍ମା ।”

“ହୁଁ-ନାଆଁଟା ତ ମନ୍ଦ ନୁହେଁ । ଏଠିକି ଆସିଛ କାହିଁକି ?”

ଘଟୋତ୍କଚଙ୍କ ମୁଣ୍ଡ ବୁଲେଇ ଦେଲା । ସେ ଭାବିବାକୁ ଲାଗିଲା କଅଣ ହେଲା—ମୋ ମୋ ଲେଖାର ଏତେ ତାରିଫ କରୁଥିଲେ, ଏବେ ନାଆଁ କହିଲେ ବି ଜାଣିପାରୁ ନାହାନ୍ତି ।

ମୂକଟି ପରି ଠିଆ ହୋଇଥିବାର ଦେଖି ପୁଲିସ୍ ସାହେବ ରୁକ୍ଷ ଗଳାରେ ପଚାରିଲେ—“କହୋ ପାଟିରୁ କଥା ବାହାରୁନି ଯେ । ମୁଁ ଠିକ୍ ଧରିଛି । ମୋତେ କହି କିଛି ଲାଭ ନାହିଁ । କୋର୍ଟକୁ ଯାଅ ।

ବାଡ଼ୁଆଡ଼ ଗୁଟ ଖାଇଲା ପରି ଘଟୋତ୍କଚ ଗୁଟିପିଟି ହୋଇ ସେଠାରୁ ପଳାଇ ଆସିଲାବେଳେ ଭାବୁଥାଏ—ଓଃ ବଇଷମ ସାମଲଟା ଏଡ଼ିକ ଠକ । ଆଉ ଥରେ ମୋ ପାଖକୁ ଆସୁ, ତାର ମୋର ସେଇଠି ଦେଖାଦେଖି ।



# ମତଦାନ

ସଭାପତି, ମୁଖ୍ୟବକ୍ତା, ମୁଖ୍ୟଅତିଥି, ଆବାହକ ଓ ଧନ୍ୟବାଦଦାତା ଓ ଦୁଇଜଣ ଶ୍ରୋତା ଏହିପରି ୭ ଜଣଙ୍କୁ ନେଇ 'କବରଡଙ୍ଗା ସାହିତ୍ୟ ସଂସଦ'ର ଏକ ବିରାଟ ସାଧାରଣ ସଭା ସଂସଦ ଭବନରେ ମହାସମାରୋହରେ ଆରମ୍ଭ ହୋଇଗଲା । ଅଗଷ୍ଟ ପନ୍ଦର ଥିଲା ସାହିତ୍ୟିକମାନଙ୍କ ପାଇଁ ଏକ ଝିଡ଼ିଆଗ୍ । ଝିଡ଼ିପୋକଙ୍କ ପରି ସାହିତ୍ୟିକମାନେ ଘରୁ ବାହାରି ପଦାରେ ଫଡ଼ ଫଡ଼ ହେଲେ । ସାପ, ବେଙ୍ଗ, କୁଆମାନେ ଯେପରି ଝିଡ଼ିପୋକମାନଙ୍କୁ ଗର୍ଭସାତ୍ କରିବାକୁ ମୁହଁ ମେଲା କରି ବସିଥାଆନ୍ତି, ଏ ସଭାମାନେ ଠିକ୍ ସେହିଭଳି ସାହିତ୍ୟିକମାନଙ୍କୁ ଗର୍ଭସାତ୍ କରିବା ଲାଗି ଦୁଆର ମେଲା କରି ବସିଥିଲେ । ଗୁହୁଁ ଗୁହୁଁ ସାହିତ୍ୟିକମାନଙ୍କୁ ଟପାଟପ ଗିଳି ପକାଇଲେ । ଗୋଟିଏ ହେଲେ ସାହିତ୍ୟିକ ବାହାରେ ଆଉ ଦେଖାଗଲେ ନାହିଁ । ଏତେଗୁଡ଼ାଏ ସଭାକୁ ଏତିକି ସାହିତ୍ୟିକ । ସେମାନେ ଅଣ୍ଟି ହୋଇଗଲେ । ସେଇଥିଲାଗି 'କବରଡଙ୍ଗା ସାହିତ୍ୟ ସଂସଦ'ର ସାହିତ୍ୟ ସଭାଟି ଅତି ବିରାଟ ନ ହୋଇ ବିରାଟ ହୋଇଥିଲା । ସଭାରେ ବସି ପ୍ରଥମେ ସମସ୍ତେ ମୁହଁ ଗୁହାଁଗୁହିଁ ହେଲେ । ଧନ୍ୟବାଦାର୍ପକ ମୁରଳି ମୋହନ ଜେନା କହିଲେ—"ଅତି ବିରାଟ ସାହିତ୍ୟ ସଭାଗୁଡ଼ିକ ଭଲଭୁଲ୍ ଫଳ ହୁଏ ନାହିଁ । ବକ୍ତୃତା ଚାଲିଥିବାବେଳେ ବହୁଲୋକ ନିଜ ନିଜ ଭିତରେ କଥାବାର୍ତ୍ତା ହୁଅନ୍ତି । କେତେକ ଚିନାବାଦାମ ଛଡ଼େଇ ପାଟିରେ ପକାଉ ଥାଆନ୍ତି । ଭଲ ଥିଲେ ବକ୍ତାଙ୍କୁ ମନେ ମନେ ଗୁଡ୍ ସାର୍ଟିଫିକେଟ୍ ଓ ଖରାପ ହୋଇଥିଲେ ଖରାପ ସାର୍ଟିଫିକେଟ୍ ଦେବାରେ ଲାଗି ପଡ଼ିଥାଆନ୍ତି । ଥୋକେ ମଞ୍ଚ ଉପରେ ବସିଥିବା କର୍ମକର୍ତ୍ତାମାନଙ୍କର ଅବଗୁଣ ସବୁ ଚର୍ଚ୍ଚା କରିବାରେ ଲାଗିଥାଆନ୍ତି । ଆଉ କେତେଜଣ ମୁଣ୍ଡ ନୁଆଇଁ ଦେଇ ଧ୍ୟାନମଗ୍ନ ଥାଆନ୍ତି । ଏଭଳି ଭିତରେ ଶୁଣିଲାବାଲା ଥାଆନ୍ତି ପାଞ୍ଚ ଛଅ ଜଣ । ତହିଁରୁ ଜଣେ ଦି'ଜଣ ଥାଆନ୍ତି ରିପୋର୍ଟର ।

ଆପଣା ନାଗରକଙ୍କୁ ସମ୍ବାଦ ଦେବା ଲାଗି ବାଧ୍ୟ ହୋଇ ଦିଅୁଥାଆନ୍ତି । ଅନ୍ତୁ ବସନ୍ତ ସଭାର ଅବସ୍ଥା ହେଲା ଏଇଆ । ଏଠାରେ ବସନ୍ତ ସଭାରେ ତ ଛଅଜଣଯାକ ମନଯୋଗ ଦେଇ ଶୁଣିବେ । ଜଣେ ବକ୍ତୃତା ଦେଉଥିବ । ଏପରି ସଫଳ ସଭା କେହି କଳ୍ପନା କରିପାରିବେ ନାହିଁ । ଧନ୍ୟବାଦାର୍ପକ ମୁରଲି ମୋହନ ଜେନାଙ୍କ କଥାଗୁଡ଼ାକ ସମସ୍ତଙ୍କ ମନକୁ ପାଇଗଲା । ଅତି ଉତ୍ସାହ ଓ ଉଦ୍ଦୀପନାର ସହ ସଭାକାର୍ଯ୍ୟ ଆରମ୍ଭ ହେଲା । ଗୋଟାଏ ବସନ୍ତ ସଭାରେ ଗୋଟାଏ ବଡ଼ ବିଷୟର ଆଲୋଚନା ହେବା ଉଚିତ । ବଡ଼ ବିଷୟ ମିଳିବ ବଡ଼ ବହିରୁ । ତେଣୁ ସମସ୍ତେ ରାମାୟଣକୁ ଖାପ୍ କରି ମାଡ଼ିବସିଲେ । ଜଣକ ଦେହରେ କିନ୍ତୁ କମ୍ୟୁନିଷ୍ଟ ଧୂଆଁ ବାଜିଥିଲା । ସେ ମୁହଁକୁ ଟିକିଏ ବିକାଟିଆ କରି କହିଲେ—"ଉହୁଁ ରାମଚନ୍ଦ୍ର ଜଣେ ସାମ୍ରାଜ୍ୟବାଦୀ, ସ୍ତ୍ରୀପୀଡ଼କ, ଶୂଦ୍ରବିଦ୍ୱେଷୀ ଖରାପ ରାଜା ଥିଲେ । ଆଜିଭଳି ପବିତ୍ର ଦିନରେ ଏପରି ଏକ ନୀଚ ରାଜାଙ୍କ ବିଷୟରେ ଆଲୋଚନା କରିବା ଅନୁଚିତ । ଆଉ ଅନ୍ୟ କୌଣସି ବିଷୟ ବରଂ ଖୋଜାଯାଉ ।"

ଅନ୍ୟମାନେ ମତଦେଲେ ଯେତେବେଳେ ଗୋଟାଏ ବିଷୟ ଉତ୍ଥାପନ ହୋଇ ହେଉ ତାହାର ଗୋଟାଏ କଳ ବାହାରିଲାଣି, ସେଇ ଗୋଟାକୁ ଧରାଯାଉ । ସେଇଟାର ଭଲ ଭାବରେ ଚର୍ଚ୍ଚା ହୋଇଗଲେ ଗୋଟାଏ ପରିଷ୍କାର ଧାରଣା ସେ ବିଷୟରେ ହୋଇଯିବ ।

ସେଥି ରାମଙ୍କ ଚରିତ୍ର ବିଷୟ ରହିଲା । ରାମଚନ୍ଦ୍ର ଯେ ସାମ୍ରାଜ୍ୟବାଦୀ ନ ଥିଲେ ସେଇଟା ପ୍ରମାଣିତ ହୋଇଗଲା । ସୀତାଙ୍କୁ ରାବଣ ଚୋରାଇ ନ ଥିଲେ ରାମ କେବେହେଲେ ଲଙ୍କା ଉପରେ ଚଢ଼ାଉ କରି ନ ଥାନ୍ତେ । ସୀତା ହରଣ ପୂର୍ବରୁ ରାମଚନ୍ଦ୍ର ଲଙ୍କା ବିଷୟ ଜାଣି ନ ଥିଲେ । ଆଉ ଯଦି ସାମ୍ରାଜ୍ୟ ବିସ୍ତାର ପାଇଁ ତାଙ୍କର ଇଚ୍ଛା ଥାଆନ୍ତା ତେବେ ରାବଣକୁ ମାରି ସେଠାରେ ସେ ନିଜକୁ ରାଜା ବୋଲି ଘୋଷଣା କରିଥାଆନ୍ତେ । ସେ କିନ୍ତୁ ତାହା ନ କରି ରାବଣ ଭାଇ ବିଭୀଷଣକୁ ରାଜା କରି, ସୀତାଙ୍କୁ ନେଇ ଚାଲି ଆସିଲେ । ତେଣୁ ସାମ୍ରାଜ୍ୟବାଦୀ ପ୍ରଶ୍ନ ଉଠୁଛି କୁଆଡ଼ୁ ? ସାମ୍ରାଜ୍ୟବାଦୀ କଥାଟା ବାଏଁ ବାଏଁ ଉଡ଼ିଗଲା । ସ୍ତ୍ରୀ ପୀଡ଼କ କଥାଟା ଉପରେ ସମସ୍ତେ

ଲୁହେଇଥିଲେ । ସୀତାଙ୍କୁ ସେ ଅତି ଭଲ ପାଉଥିଲେ । ପ୍ରଜାଙ୍କୁ ସନ୍ତୁଷ୍ଟ କରିବା ଲାଗି ସେ ସୀତାଙ୍କୁ ବାଧ୍ୟହୋଇ ବଣରେ ଛାଡ଼ି ଦେଇଥିଲେ । କିନ୍ତୁ ଜୀବନସାରା କ ଉଦାଳିବିକଳ ନ ହୋଇଛନ୍ତି । ସେ ମହାରାଜା ଥିଲେ । ତାଙ୍କୁ ଦେଢ଼ ଶହ ସ୍ତ୍ରୀ ମିଳିଥାନ୍ତେ, କିନ୍ତୁ ସେ ଗୋଟିଏ ହେଲେ ରଖି ନ ଥିଲେ । ସ୍ତ୍ରୀ ପିଡ଼ିକ ହୋଇଥିଲେ ବି ପ୍ରତିଦିନ ଗୋଟିଏ ଲେଖାଏଁ ରାତିରେ ବାହାହୋଇ ସକାଳେ ପିଠିରେ ନାତ ମାରି ଘରୁ ତଡ଼ି ଦେଉ-ଥାନ୍ତେ । ସମସ୍ତଙ୍କ ମନକୁ ପାଇଗଲା ।

ଶୁଦ୍ର ବିଦ୍ୱେଷୀ କଥାଟା ବେଳକୁ ସମସ୍ତେ ଆଣ୍ଠେଇ ପଡ଼ିଲେ । ରାମଚନ୍ଦ୍ରଙ୍କୁ କେହି ସାହାଯ୍ୟ କଲେ ନାହିଁ । କିଛି ହେଲେ ତାଲି କାହାକୁ ମିଳିଲା ନାହିଁ । ରାମଚନ୍ଦ୍ରଙ୍କ ଏକାନ୍ତ ଅନୁଗତ ଛାତ୍ରନେତା ବିଜୟାନନ୍ଦ ସିଂହ ଅତି ବ୍ୟଥିତ ହୋଇପଡ଼ି ମୁହଁ ପୋତିଦେଲେ । ରାମଚନ୍ଦ୍ର ସେ ଦଫାରୁ ଖସିବା ଅସମ୍ଭବ ମନେହେଲା । ସମସ୍ତଙ୍କ ହୃଦ୍‌ବୋଧ ହୋଇଗଲା ଯେ ରାମଚନ୍ଦ୍ରଙ୍କ ଉପରେ ଲାଗୁ ହୋଇଥିବା ଦଫାରୁ ତାଙ୍କୁ କେହି ଖଲାସ କରିପାରିବେ ନାହିଁ । କେଜାଣି ବିଜୟାନନ୍ଦ ଅବା କିଛି କରିପାରନ୍ତି । ସମସ୍ତେ ତାଙ୍କ ଆଡ଼େ ଚାହିଁଲେ । ବିଜୟାନନ୍ଦଙ୍କ ଥୋଡ଼ି ସେତେବେଳକୁ ଛାତିରେ ସିଲେଇ ହୋଇସାରିଥାଏ । ସମସ୍ତେ ଭାବିଲେ କାଠପାଣି ଖୋଜିବା ଲାଗି ବିଜୟ ଘୋର ଧ୍ୟାନମଗ୍ନ । ତାଙ୍କୁ ଧ୍ୟାନରୁ ଭାଙ୍ଗିବା ପାଇଁ କାହାରି ଇଚ୍ଛା ହେଲାନି, କାଳେ ସେ କାଠପାଣିଟାଏ ପାଇଯିବ । ସମସ୍ତେ ବି କାଠପାଣି ଅଣ୍ଡାଳିବାରେ ଲାଗିଗଲେ ।

ବିଜୟାନନ୍ଦ ଧ୍ୟାନରେ ଧ୍ୟାନରେ ସାଥି କରୁଣିକୁ ସାଙ୍ଗରେ ନେଇ ବାରବାଟୀ ଦୁର୍ଗ ଆଡ଼େ ଧପାଇଲେ । ଦୁହେଁ ଦୂରରୁ ଦେଖିଲେ କୁଦ ଉପରେ ଗୋଟିଏ ରକେଟ୍ । ମନେପଡ଼ିଗଲା—ଆରେ ଭୃଗୁପୁ ଓଡ଼ଶୀ ରକେଟ୍ ତିଆରି ହେବାର ଥିଲା । ଏଇଟା ବୋଧହୁଏ ତିଆରି ହୋଇ ଥୁଆ ହୋଇଛି । ବଢ଼େଇ, କମାର, ଦରଜୀ ଦୁଇଜଣ ବ୍ୟୋମଗୁରୁ ଓ ବୈଜ୍ଞାନିକ ସମସ୍ତେ ଘୋର ନିଦରେ ଶୋଇଛନ୍ତି । ପଞ୍ଚାନନ ମେଳାର ସାଜ ସରଞ୍ଜାମ ଏଠି ସେଠି ପଡ଼ିଛି । ଦୁଇ ଗୁରିଟା ଗଞ୍ଜେଇ ଚିଲମ ଏଣେତେଣେ ପଡ଼ିଛି । ଦୁହେଁ ଭାବି ଭାବି ସ୍ଥିର କଲେ ଯେ ରକେଟ୍ ତିଆରି ଶେଷ

କରି ସମସ୍ତେ ଆନନ୍ଦରେ ପଞ୍ଚାନନ ମେଳା କରିଛନ୍ତି । ବ୍ରହ୍ମପୁରୀ ଗଞ୍ଜେଇ କଳର ପ୍ରସାଦ ଚଳମରେ ଭରି ମନ ଇଚ୍ଛା ଟାଣି ତା ଉପରେ ସାହୋଳ ରସଗୋଲା କଷି କରି ଠୁଙ୍କି ଦେଇଛନ୍ତି । ଫଳରେ ସମସ୍ତ ନେନହୋସ୍ ହୋଇପଡ଼ିଛନ୍ତି ।

କରୁଣି ବିଜୟକୁ କହିଲେ—"ହେ ଗୋଟାଏ ବଡ଼ ସୁଯୋଗ ମିଳିଛି । କେବେହେଲେ ରକେଟ୍ ଭିତର ଦେଖିପାରି ନ ଥାନ୍ତେ । ଏତିକିବେଳେ ଚାଲ ରକେଟ ଭିତରଟା ଦେଖିଆସିବା । ଆମ ଓଡ଼ିଆ କମାର ବଢ଼େଇମାନଙ୍କ କାରିଗରୀ କାମ ସ୍ୱଚକ୍ଷୁରେ ଦେଖିନେବା । ବାରମ୍ବାର ବଢ଼େଇଙ୍କ କଥା ଶୁଣୁଥିଲୁ । ଆଜି ଗୋଟାଏ ସୁବିଧା ମିଳିଛି । ନିଜ ଆଖିରେ ସବୁ ଦେଖିନେବା ।"

ଦୁହେଁ ସମସ୍ତଙ୍କୁ ଡେଇଁଡାଇଁ ଶିଡ଼ିବାଟେ ଚଢ଼ି ରକେଟ ଭିତରେ ପଶିଲେ । ଯନ୍ତ୍ରପାତି, ତାର, ନାନାଜାତି ସୂଚକ (ମିଟର)ରେ କୋଠରୀଟି ଭର୍ତ୍ତି ହୋଇଯାଇଥିଲା । ଅତି ଆନନ୍ଦ ହୋଇଯାଇ ଦୁହେଁ ଯନ୍ତ୍ରକାଠିମାନଙ୍କରେ ହାତ ମାରୁଥାଆନ୍ତି ଓ ସେଇଟା କି ଯନ୍ତ୍ର, ଲେଖାରୁ ପଢ଼ୁଥାଆନ୍ତି । ଏମିତି ହାତ ମାରୁ ମାରୁ କରୁଣି ଗୋଟାଏ କାଠିକୁ ଟିକିଏ ହଲାଇଦେଲା । ସଙ୍ଗେ ସଙ୍ଗେ କବାଟଟା ଧଡ଼କରି ପଡ଼ିଯାଇ କୋଠରୀଟିକୁ ବନ୍ଦ କରିଦେଲା । ଦୁହେଁ ଭୟରେ କାବୁସ୍ଥ ହୋଇଗଲେ । ବିପଦ ଆସିଲାବେଳେ ଏକୁଟିଆ ଆସେ ନାହିଁ । ପଦାରେ ଗଞ୍ଜେଇ ଭୋଳରେ ଶୋଇଥିବା ନିଆଁ ଧରାଳିଟା 'ଧଡ଼' ଶବ୍ଦଟା ଶୁଣି ଚେଇଁ ଉଠିଲା । ବ୍ୟୋମଗୃହୀ ଦୁହେଁ ରକେଟ ଭିତରେ ପଶିଗଲେଣି ବୋଲି ଭାବିନେଲା । ଶୋଇପଡ଼ି ଗୁରୁତର ତ୍ରୁଟି କରି ସାରିଲାଣି ଓ ଆଉ ଡେରି କରିବା ଉଚିତ ନୁହେଁ ବୋଲି ଭାବି ନିଦ ବାଉଳାରେ ରଞ୍ଜକରେ ନିଆଁ ଲଗେଇଦେଲା । ବିକଟ ଗର୍ଜନ ଓ ବିରାଟ ନିଆଁ ଉଦ୍‌ଗାରି ରକେଟଟା ଉପରକୁ ଉଠିଗଲା । ବିଜୟ ହାଉଳି ଖାଇ ପାଟି କଲେ—"ହଇରେ ଚଣ୍ଡାଳ କଅଣ କଲୁ ? ଆମ କଥା ସରିଗଲା । ଆମେତ କିଛି ଜାଣିନୁ ଆଉ ଫେରିବା କେମିତି ? ମୋର ଆଇନ ପରୀକ୍ଷା ପଅରଦିନ ଥିଲା । ସବୁ ବହିପତ୍ର ଆଉ ଲେଖିବାଲୋକ ମୁଁ ଯୋଗାଡ଼ କରିସାରିଥିଲି, ତୁ କଅଣ କଲୁ ?"

କରୁଣି କାନ୍ଦ କାନ୍ଦ ହୋଇ କହିଲେ—ମୋର ସର୍ବନାଶ ହୋଇଗଲା । କାଲି ରଘୁବାବୁ ତିନିଶହ ଟଙ୍କା ଦେବେ ବୋଲି କହିଥିଲେ, ସେତିକି ଗଲା । ଆଇନ କଲେଜରେ ନାଆଁ ଲେଖାଇ ଥାଆନ୍ତି ସେତିକି ବି ଗଲା । ବଜପ୍ରାନନ୍ଦ ପାଟି କରି ଉଠିଲେ—"ଆରେ ରଖ ତୋ ନାଆଁ ଲେଖା, ପରୀକ୍ଷା ଶେଷରେ ମୋର ନର୍ବନ୍ଧ ହେବାର ଥିଲା, ସବୁ ସରିଗଲା । ଉଃ ! ମୋ ମନ ଘାଣ୍ଟି ଚକଟି ହୋଇଯାଉଛି । ମୁଁ ଥାଉ ଥାଉ ମୋ ଜନଷକୁ ଆଉ ଜଣେ କାହା ହୋଇଯିବ । ଉଃ ! କେତେ ପ୍ରେମ ସେ ମୋତେ ନ କରୁଥିଲା ।" ଏହା କହି ସେ ରୁମାଲରେ ଆଖିରୁ ଲୁହ ପୋଛିଲେ ।

ଏତିକିବେଳେ ସାମ୍ନାରେ ଥିବା ଗୋଟିଏ ମୁନ୍ଦଲରୁ ମଣିଷ ପାଟି ଶୁଭିଲା—"ଆରେ ସେ ଉକେଟ ଭିତରେ ତୁମେ କିଏ ?"

"ଆମେ ଦୁ'ଜଣ ମଣିଷ ।"

"ତୁମେ ମଣିଷ ହୋଇଥିଲେ ଆମ ରାଜ୍ୟର ଦୁଇ ବର୍ଷର ଆୟୁରେ ତିଆରି ହୋଇଥିବା ରକେଟ୍‌ଟାକୁ ସାରିଦେଲ । ତୁମକୁ କିଏ କହିଲା ତା' ଭିତରେ ପଶିବାକୁ ? ପଶିଲ ତ ପଶିଲ, କଳକବଜାରେ ହାତ ମାରିଲ କାହିଁକି ? ଯାହା ତ ହେବାର ହେଲାଣି । ଯାହାସବୁ ଗ୍ରହପାଖରେ ଦେଖିବ ଆମକୁ କହିବ । ଆମେ ପୃଥିବୀର ଯନ୍ତ୍ରୀମାନେ ଏଇଠୁ ଗଣିଗୁଣି ଯାହା ନିର୍ଦ୍ଦେଶଦେବୁ ସେହି ଅନୁଯାୟୀ କାମ କର, କପାଳ ତେଜ ଥିଲେ ପୁଣି ଫେରିଆସିବ । ଝରକାବାଟେ ଦୂରବୀକ୍ଷଣ ସାହାଯ୍ୟରେ ଚାହିଁଥାଅ । ଯାହା ଦେଖିବ ସାଙ୍ଗେ ସାଙ୍ଗେ କହିବ ।

ହଠାତ୍ କରୁଣି ଚିଲେଇଲା—"ଆଁ ଏଁ ଏ କଅଣ ଗୋଟାଏ ବଡ଼ ଲଞ୍ଜଭଲିଆ କଅଣ ଗୋଟାଏ ଦେଖାଯାଉଛି ।"

ତକ୍ଷୁ—"ସେଇଟା ଆସ୍ତେ ଆସ୍ତେ ବଡ଼ହୁଛି କି ସେମିତି ସେମିତି ରହୁଛି ?"

"ନାଁ—ବଢ଼ୁନି ତ ।"

"ଓହୋ ତୁମ ରକେଟ ଅସମ୍ଭବ ଗତିରେ ଧାଉଁଛି । ବୁଧ, ମଙ୍ଗଳ ଆଦି ଗ୍ରହ କଡ଼ଦେଇ ତୁମ ରକେଟ ବୃହସ୍ପତି ପାଖଦେଇ ଯାଉଛି । ବୃହସ୍ପତିର ଲକ୍ଷ୍ୟ ପାଖଦେଇ ତୁମ ଏବେ ଯାଉଛ । ଶୀଘ୍ର ରକେଟ ଇଞ୍ଜିନ ବନ୍ଦ କରିଦିଅ । କାନ୍ଥରେ ଯେଉଁଠି ରକେଟ ଇଞ୍ଜିନ ବୋଲି ଲେଖା ହୋଇଛି ସେଠି ଗୋଟାଏ ହ୍ୟାଣ୍ଡେଲ ଅଛି ତାକୁ ଉପରକୁ ଟେକିଦିଅ ।"

"ହଁ, ହଁ ଟେକିଦେଲି ।"

ବିଜୟାନନ୍ଦ କିଛି ସମୟ ପରେ ଚଲେଇ ଉଠିଲେ—'ସର୍ବନାଶ! ସର୍ବନାଶ !! ଗୋଟାଏ ଗୋଲକ ଆମରି ଆଡ଼େ ମାଡ଼ି ଆସୁଛି । ତାହା କ୍ରମେ ବଡ଼ ହୋଇଯାଉଛି ।"

"ଆରେ ଗୋଲକଟା ତୁମ ଆଡ଼କୁ ଆସୁନି । ସେ ତମ ରକେଟ-ଟାକୁ ଟାଣି ନେଉଛି । ଯେଉଁ ହାଣ୍ଡେଲ ପାଖରେ ରେଟ୍ରୋ ରକେଟ ଲେଖା ହୋଇଛି ତାକୁ ଡାହାଣକୁ ମୋଡ଼ିଦିଅ ।"

"ଏଥର ଆସ୍ତେ ଆସ୍ତେ ଗଲିଲାଁ । ଖୁବ୍ ପାଖ ହୋଇଗଲି । ଏ ଗୋଲକ ଗୋଟାଯାକ "ଆମ ପୃଥିବୀ ପରି ବଣ, ନଈ, ପାହାଡ଼ରେ ପରିପୂର୍ଣ୍ଣ ହୋଇଛି । ଆଜି ଅଳ୍ପ ସମୟରେ ଆମ ରକେଟ ଜଙ୍ଗଲ ଭିତରେ ଖସିପଡ଼ିବ ନା: କଅଣ ।"

"ଠିକ୍ ଅଛି । ବ୍ରେକ ଲେଖିଥିବା ହାଣ୍ଡେଲକୁ କଷିକରି ବାଆଁକୁ ବୁଲେଇଦିଅ । ସେଇଟା ଏକ ଅନାବିଷ୍କୃତ ବୃହସ୍ପତିର ଉପଗ୍ରହ । ସେଠାରେ ଜୀବ ସତ୍ତା ଅଛି । ଯଦି ତୁମେ ଫେରିପାରିବ ତେବେ ପୃଥିବୀରେ ତୁମ କେବଳ ନଯ ପୂଜାପାଇବ ତାର ଇୟତ୍ତା ନାହିଁ । ତୁମେ ଦୁହେଁ ଯାହା ମାଗିବ ସରକାର ତାହା ଦେବେ । ରକେଟ ଭୂଇଁ ଉପରେ ରହିବା ପରେ ବାହାରକୁ ଯାଇ ବୁଲିବ । ଯାହା ଯାହା ଦେଖିବ ସେହି ସୁନ୍ଦର ବାଟେ କହିବ ।"

ବଜୟାନନ୍ଦ କହିଲେ, "ଟିକଏ ଆମ ଘରେ କହିଦେବ ନବନ୍ଧ ଦନଟା ଗଡ଼େଇ ଦେବେ । ବାହାଘର ପ୍ରସ୍ତାବଟା ଭାଙ୍ଗିଦେବେ ନାହିଁ ।" କରୁଣି କହିଲେ, "ସେ ମାରୁଅଡ଼କୁ କହିଦେବ ମୁଁ ଏଠାରୁ ଗଲେ ତା ଘରେ ଟିଉସନ କରବ । ଆଉ କାହାକୁ ଟିଉସନ ମାଷ୍ଟର କର ରଖିବେ ନାହିଁ ।"

ରକେଟ ଭୂଇଁରେ ଲଗିବା ମାତ୍ରେ ଦୁହେଁ କବାଟ ଖୋଲ ପଦାକୁ ବାହାରପଡ଼ଲେ । କ ଆଶ୍ଚର୍ଯ୍ୟ ! ଦୁହେଁ ଦେଖିଲେ ଜଟାଜୁଟଧାରୀ ପାଞ୍ଚ ଜଣ ସନ୍ନ୍ୟାସୀ ସେଠାରେ ଠିଆହୋଇ ଅପେକ୍ଷା କରିଛନ୍ତି । ଦୁହେଁ ଲମ୍ବ ଲମ୍ବ ହୋଇ ସେମାନଙ୍କ ଗୋଡ଼ତଳେ ପଡ଼ଗଲେ । ସମସ୍ତେ ଏକ ସ୍ୱରରେ ଆଶୀର୍ବାଦ କଲେ—ଆୟୁଷ୍ମାନ ହୁଅ । ଏ ଉପଗ୍ରହଟି ହେଲା ବାଲ୍ମୀକ ଖଣ୍ଡ । ରାବଣର ଭଣଜା ଚଣ୍ଡାସୁର ଏଠି ରାଜତ୍ୱ କରୁଥିଲା । ଭଗବାନ ରାମଚନ୍ଦ୍ର ତାକୁ ମାର ଏହାକୁ ମହର୍ଷି ବାଲ୍ମୀକଙ୍କୁ ଦେଇଛନ୍ତି । ତୁମେ ଦୁହେଁ ଆସିବା ଜାଣି ମହର୍ଷି ବାଲ୍ମୀକ ତମ ଦୁହିଁଙ୍କୁ ପାଛୋଟି ନେବାକୁ ପଠାଇଛନ୍ତି । ତାଙ୍କ ଆଶ୍ରମକୁ ଚାଲନ୍ତୁ । ସେଠି ପ୍ରତିଦିନ ସନ୍ଧ୍ୟାରେ ରାମାୟଣ ପାଠ ହୁଏ । ସ୍ୱୟଂ ରାମଚନ୍ଦ୍ର ରାମାୟଣ ଶୁଣିବା ଲାଗି ବୈକୁଣ୍ଠରୁ ଆସନ୍ତି । ଚାଲ, ତାଙ୍କୁ ଦେଖି ନେତ୍ର ପବିତ୍ର କରିବ ।

ସନ୍ନ୍ୟାସୀମାନଙ୍କ ସହିତ ଦୁହେଁ ବାଲ୍ମୀକ ମଠକୁ ଗଲେ । ସାଷ୍ଟାଙ୍ଗ ପ୍ରଣିପାତ ହୋଇ ଦୁହେଁ ବସିଲେ । କିଛି ସମୟ ପରେ ଭଗବାନ ରାମଚନ୍ଦ୍ର ଓ ହନୁମାନ ଆସି ପହଞ୍ଚିଲେ । ଭଗବାନ ଗାଦିରେ ବସିଲେ । ହନୁମାନ ତାଙ୍କ ପାଦ ନିଜ ବାଳୁଆଜଙ୍ଘ ଉପରେ ରଖି ଧୀରେ ଧୀରେ ଚିପିଲେ । ରାମାୟଣ ପଢ଼ାହେଲା । ପୋଥିରୁ ଦୁଇପତ୍ର ପଢ଼ା ହେବା ପରେ ପାଠକ ଟିକଏ ଦମ୍ ନେଲେ । ଏହି ଅବସରରେ ବିଜୟାନନ୍ଦ ହାତଯୋଡ଼ି ଶ୍ରୀରାମଚନ୍ଦ୍ରଙ୍କୁ କହିଲେ—"ଭଗବାନ ଅପରାଧ ମାର୍ଜନା କରିବେ । ଆପଣ ଭାରତରେ ଶାସନ କରୁଥିଲା ବେଳେ ଶୂଦ୍ର ତପସ୍ୱୀ ଶମ୍ବୁକକୁ ମାରିଦେଲେ କାହିଁକି ? ସେତେବେଳେ ଭୟରେ ଆପଣଙ୍କୁ କେହି କିଛି କହିଲେ ନାହିଁ । ଏବେ କିନ୍ତୁ ଆପଣ ଚାଲି ଆସିବାରୁ ସମସ୍ତେ ଛି-ଛି କର କରୁଛନ୍ତି । ଖବର କାଗଜରେ ଆପଣଙ୍କ ବିରୁଦ୍ଧରେ ଲେଖୁଛନ୍ତି । ରାମଚନ୍ଦ୍ରଙ୍କୁ ସମାଲୋଚନା

କରାଯାଉଛି ଶୁଣି ହନୁମାନ ଉତ୍‌କ୍ଷିପ୍ତ ହୋଇ—'କିଏ ସେ ଚଣ୍ଡାଳ' କହି ଏକ ଭୟଙ୍କର ଗର୍ଜନ କଲେ । ସେ ଗର୍ଜନରେ ହଁ'ଗୁରୁଙ୍କ ଗଛ ଉପୁଡ଼ିଗଲେ । ବିଜୟ କରୁଣି ଦୁହେଁ ଉଡ଼ିଯାଇ ଦୁଇଶହ ମିଟର ଦୂରରେ ପଡ଼ି ମୂର୍ଚ୍ଛା ହୋଇଗଲେ । ରାମଚନ୍ଦ୍ର ଦୁଃଖିତହୋଇ କହିଲେ—'ହନୁମାନ ତୁମେ ଭଲ କଥା କଲ ନାହିଁ । ବିରୁଦ୍ଧ ଦଳର ଲୋକଙ୍କ ପ୍ରତି ସହନଶୀଳତା ନ ଦେଖାଇଲେ ଗଣତନ୍ତ୍ର କାମ କରିବ କିପରି ? ଯାଅ ସେ ଦୁଇ ଯୁବକ ଦୁହିଁଙ୍କୁ ସାଷ୍ଟାମ କରି ନେଇଆସ । ମୁଁ ତାଙ୍କର ସନ୍ଦେହମୋଚନ କରିବି । ପ୍ରଭୁଙ୍କ ପାଦ ମୁଣ୍ଡରେ ଥୋଇ ହନୁମାନ ବାରମ୍ବାର କ୍ଷମା ପ୍ରାର୍ଥନା କଲେ ଓ ଦୁଇ ଯୁବକଙ୍କ ପାଖକୁ ଯାଇ ସେମାନଙ୍କ ମୁହଁରେ ପାଣି ଛିଞ୍ଚିଲେ ଓ ମୁହଁକୁ ଗୋଟିଏ ପତ୍ରରେ ବିଞ୍ଚିଲେ । ଦୁହିଁଙ୍କର ହୋସ୍ ଆସିବା ମାତ୍ରେ ହନୁମାନଙ୍କୁ ଦେଖି 'ବୋପା ଲୋ ମାଆଲୋ' ଚିଲେଇ ଉଠିଲେ । କୁଣ୍ଡିଆ କୁଣ୍ଡେଇ ହୋଇ ପାଟିକଲେ—"ଆଜ୍ଞା ଆମେ ନିର୍ଦ୍ଦୋଷ । ଆଉ କିଛି କହିବୁ ନାହିଁ ।"

ହନୁମାନ ପ୍ରବୋଧ ଦେଇ କହିଲେ—ଭୟ କର ନାହିଁ । ପ୍ରଭୁ ତୁମ ଉପରେ ସନ୍ତୁଷ୍ଟ ଅଛନ୍ତି । ଆସ ପ୍ରଭୁଙ୍କଠାରୁ ସମସ୍ତ କଥା ଶୁଣିବ । ହନୁମାନ ଦୁହିଁଙ୍କୁ ନେଇ ପ୍ରଭୁଙ୍କ ଆଗରେ ବସାଇଲେ ।

ଭଗବାନ ଶ୍ରୀରାମଚନ୍ଦ୍ର କୋମଳ କଣ୍ଠରେ କହିଲେ—"ଯୁବକ ଯାହା ପଚାରିଛ ତାହାର ଉତ୍ତର ଏବେ ମୁଁ ଦେଉଛି । ଭାରତୀୟମାନେ ସାମାନ୍ୟ କିଛି ଜ୍ଞାନ ପାଇଲେ ସବୁ ଜାଣିଗଲେ ବୋଲି ଗର୍ବ କରନ୍ତି । ଅନ୍ୟମାନଙ୍କୁ ନିଜଠାରୁ କମ୍ ଜ୍ଞାନବିଶିଷ୍ଟ ବୋଲି ଭାବି ନଥାନ୍ତି । ସବୁ ବିଷୟର ଭୁଲ ବ୍ୟାଖ୍ୟା କରି ବେଶି ଆତ୍ମପ୍ରସାଦ ଲାଭ କରନ୍ତି । ସମାଲୋଚନାକାରୀମାନେ ପ୍ରଥମତଃ କିଏ ବ୍ରାହ୍ମଣ ଓ କିଏ ଶୂଦ୍ର ତାହା ନ ଜାଣି ସୁଦ୍ଧା ସେ ବିଷୟରେ ବହୁତ ଭ୍ରାନ୍ତ ଧାରଣା ଦିଅନ୍ତି । ଯିଏ ବ୍ରହ୍ମକୁ ଜାଣିଛି ସେ ବ୍ରାହ୍ମଣ । ଯୋଗର ପ୍ରାଥମିକ ସୋପାନଗୁଡ଼ିକ କଠୋର ସାଧନଦ୍ୱାରା ଆୟତ୍ତ କରିବାକୁ ହୁଏ । ଯମ, ନିୟମ, ଆସନ, ପ୍ରାଣାୟାମ, ପ୍ରତ୍ୟାହାର--ଏଗୁଡ଼ିକ ଆୟତ୍ତ କଲେ ଜଣେ ମିଛ କହିପାରେ ନାହିଁ । କାହାର ଅନିଷ୍ଟ ଚିନ୍ତା କରିପାରେ ନାହିଁ । ଅନ୍ୟର ଦ୍ରବ୍ୟ ଉପରେ ତାର ଲୋଭ ହୋଇ-

ପ୍ାରେ ନାହିଁ । ସେ ସମ୍ପୂର୍ଣ୍ଣ କ୍ରୋଧଶୂନ୍ୟ ହୋଇଯାଏ । ଗର୍ବ ତା ପାଖ ମାଡ଼ିପାରେ ନାହିଁ । ଉପରୋକ୍ତ ସୋପାନଗୁଡ଼ିକରେ ସିଦ୍ଧିଲାଭ କଲେ ସେ ବ୍ରହ୍ମ ଉପଲବ୍ଧି କରେ, ସେ ହୁଏ ବ୍ରାହ୍ମଣ । କେବଳ ସାଧନାଦ୍ୱାରା ସେ ଏହି ସ୍ତରକୁ ଆସିଥାଏ । ବ୍ରାହ୍ମଣ ହୋଇଯିବା ପରେ ସେ ଧାରଣା ଧ୍ୟାନ ଓ ସମାଧି ଆଡ଼କୁ ଅଗ୍ରସର ହୁଏ । ଏ ତିନି ସୋପାନ ଅତି କଠୋର ସାଧନା ଦ୍ୱାରା ଆୟତ୍ତ ହୋଇଗଲେ ସେ ହୁଏ ଅସୀମ ଶକ୍ତିର ଅଧିକାରୀ । ପ୍ରଥମ ପାଞ୍ଚ ସୋପାନ ତାର ଆୟତ୍ତ ଥିବାରୁ ସେ ଶକ୍ତିର ଅପବ୍ୟବହାର କରିପାରେ ନାହିଁ । ପ୍ରଥମ ପାଞ୍ଚ ସୋପାନ ଆୟତ୍ତ ନ କରି ବା ବ୍ରାହ୍ମଣ ନ ହୋଇ ଯିଏ ଶେଷ ତିନି ସୋପାନକୁ କଠୋର ସାଧନା ଦ୍ୱାରା ଆୟତ୍ତ କରି ଅସୀମ ଶକ୍ତିର ଅଧିକାରୀ ହୋଇଯାଏ ସେ ଶକ୍ତିର ଅପବ୍ୟବହାର ହିଁ କରିଥାଏ । ଅସୀମ ଶକ୍ତିର ଅପବ୍ୟବହାର ହେଲେ ଜନସାଧାରଣଙ୍କୁ ଅସୀମ କଷ୍ଟଭୋଗ କରିବାକୁ ପଡ଼େ । ଯିଏ ପ୍ରଥମ ପାଞ୍ଚସୋପାନ ଆୟତ୍ତ ନ କରି ଅର୍ଥାତ୍ ବ୍ରାହ୍ମଣ ନ ହୋଇ ଶେଷ ତିନି ସୋପାନ ଆୟତ୍ତକରିବାକୁ ବା ତପସ୍ୟା କରିବାକୁ ଚେଷ୍ଟାକରେ ତାକୁ ବାଧା ଦିଆଯିବା ଉଚିତ । ଗୋଟିଏ ପିଲାହାତରେ ଧାରୁଆ ଛୁରିଟାଏ ଦେଲେ ସେ ନିଶ୍ଚୟ ନିଜ ଦେହ ତଥା ଅନ୍ୟମାନଙ୍କ ଦେହ ଅଠରଠାଆ ଖଣ୍ଡି ଆକରିବ । ଅବ୍ରାହ୍ମଣ ବୈଜ୍ଞାନିକମାନେ ବ୍ରହ୍ମଶକ୍ତି ବା ପରମାଣୁ ଶକ୍ତିଲାଭ କରି ପ୍ରଥମେ ମଣିଷ ଉପରେ ପକେଇଲେ । କର୍ମ ଓ ସାଧନା ଦ୍ୱାରା ଯେ କୌଣସି ମାନବ ବ୍ରାହ୍ମଣ ହୋଇପାରେ, ଜନ୍ମଦ୍ୱାରା ନୁହେଁ । ଶମ୍ବୁକ ବ୍ରାହ୍ମଣ ନ ହୋଇ ତପସ୍ୟା ଅର୍ଥାତ ଶେଷ ତିନି ସୋପାନର ସାଧନା କରୁଥିଲା । ତାହା ବନ୍ଦ କରାଇ ନ ଥିଲେ ସେ ବ୍ରହ୍ମଶକ୍ତି ଲାଭକରି ଦାଗଦଣ୍ଡଟା ହିରୋସୀମା ଓ ନାଗାସାକି ସୃଷ୍ଟି କରି ଜଗତର ଅକଥନୀୟ ଅକଲ୍ୟାଣ କରିଥାନ୍ତା । ଯାଇତାଟାଏ ପକାଇଦେଲେ ବ୍ରାହ୍ମଣ ହୋଇଗଲୁ ବୋଲି ଭାବିବା ମୂର୍ଖତା ଛଡ଼ା ଅନ୍ୟ କିଛି ନୁହେଁ । ଏବେ ବୁଝି ପାରିଲ ଯୁବକ-ଗଣ, ମୁଁ କାହିଁକି ଶମ୍ବୁକକୁ ହତ୍ୟା କରିଥିଲି । ଯଦି ଆଉ କିଛି ସନ୍ଦେହ ହେଉଥାଏ ପଚାର । ହନୁମନ୍ତଙ୍କୁ ଦେଖି ଭୟରେ ହଁ ହଁ । ମାରି ନାହିଁ ।"

ଅନେକ୍ୟ ଓ କରୁଣି ଠେଲାପେଲା ହୋଇ କହି ଉଠିଲେ—"ନାହିଁ ଆଜ୍ଞା ହନୁମନ୍ତଙ୍କୁ ଡରୁ ନାହୁଁ—" ଏହି ସମୟରେ ହନୁମନ୍ତ ଟିକିଏ

ଗାଇଦେଇ ଗୃହିଁଦେଲେ । ଦୁହେଁ ଗ୍ରନଆରେ କୁଣ୍ଠିଆ କୁଣ୍ଠେଇ ହୋଇ ଉଡ଼ି ଗ୍ରୁଡ଼ିଲେ—"ଆଜ୍ଞା ଆପଣ ଯାହା କହୁଛନ୍ତି ସବୁ ଠିକ୍ ।"

ଏଣେ ସାହିତ୍ୟ ସଭାରେ ସମସ୍ତେ ରାମଚନ୍ଦ୍ରଙ୍କୁ ଶୂଦ୍ରଦ୍ୱେଷୀ ବୋଲି ସାବ୍ୟସ୍ତ କରି ତାଙ୍କର ନିନ୍ଦାବାଦ କରି ଲଗିଥିଲେ । ରାମଚନ୍ଦ୍ରଙ୍କ ପାଇଁ ଛେନ୍ଦିଦେଲେ ଆହା ବୋଲି ପଦୁଟିଏ କହୁ ନ ଥାନ୍ତି । ରାମଚନ୍ଦ୍ରଙ୍କ ବିରୁଦ୍ଧରେ ଏକ ନିନ୍ଦାସୂଚକ ପ୍ରସ୍ତାବ ସର୍ବସମ୍ମତିକ୍ରମେ ପାଶ କରିବାର ମସୁଧା ଗ୍ଲୁଲିଥାଏ । କେବଳ ବିଜୟାନନ୍ଦ ମୁଣ୍ଡ ପୋତି ଭାବି ଲଗିଥାଆନ୍ତି । ହଠାତ୍ ସେ ପାଖରେ ବସିଥିବା ସଭାପତିଙ୍କୁ କୁଣ୍ଠେଇ ପକେଇ ଚଲେଇଲେ "ଆଜ୍ଞା ଆପଣ ଯାହା କହୁଛନ୍ତି ସବୁ ଠିକ୍ ।"

ସଭାପତି ବିଜୟାନନ୍ଦଙ୍କର ଉଚ୍ଚ ପ୍ରଶଂସା କରି କହିଲେ—"ଯାହା ହେଉ ବିଜୟବାବୁ ଜଣେ ଉଚ୍ଚକୋଟିର ସାହିତ୍ୟିକ । ଏହି ମତ ଦେବାକୁ ତାଙ୍କୁ ବହୁସମୟ ଧରି ଗମ୍ଭୀର ଭାବରେ ଚିନ୍ତା କରିବାକୁ ପଡ଼ିଲା । ଭୂଷ୍ କରି ନ ଭାବି ନ ଚିନ୍ତି କୌଣସି ଗୋଟିଏ ମତ ଦେବା ଅନୁଚିତ । ବିଜୟବାବୁ ସମସ୍ତଙ୍କର ଆଦର୍ଶ ହେବା ଉଚିତ ।

ବିଜୟାନନ୍ଦ ବାବୁ କିନ୍ତୁ ପ୍ରକୃତିସ୍ଥ ହୋଇ ଲାଜରେ ସଭାପତିଙ୍କ ଅନୁମତି ନେଇ ସଭା ଗ୍ରୁଡ଼ି ପଳେଇଲେ ।



# ବଂଶୀ ନିଂଶୀବଧାନୀ

ଶ୍ରୀ ଭଗବାନ ନାୟକ ବର୍ମା ଓ ଶ୍ରୀ ମୁରଲୀ ମୋହନ ଜେନାଙ୍କ ସ୍ୱାକ୍ଷରରେ ଏକ ନିମନ୍ତ୍ରଣ ପତ୍ର ରଣପା କବି ମାନମଣି ମହାତ୍ମାଙ୍କ ପାଖରେ ପହଞ୍ଚିଲା । ଚିଠି ଉପରେ ସନ୍ତକ ଦେଖିବାମାତ୍ରେ ମହାତ୍ମାଏ ଚଟ୍ କରି ବୁଝିଗଲେ ଯେ ସେଇଟା ଉତ୍କଳ ସାହିତ୍ୟ ସମାଜର । ପତ୍ରର ବିଷୟବସ୍ତୁ ନ ପଢ଼ି ସେ ଆଖି ବୁଜି, ବିଷୟଟି କ'ଣ ହୋଇଥିବ କଳ୍ପନା ଜଳ୍ପନା ଚଳେଇଲେ । ମୋତେ ବକ୍ତୃତା ଦେବାକୁ ଡାକି ନ ଥିବେ । କାରଣ ସେମାନେ ଭଲକରି ଜାଣନ୍ତି ଯେ କେହି ବକ୍ତୃତା ଦେବାକୁ ଡାକିଲେ ମୋତେ ଏକ, ଦୁଇର ତଳିବ ଦେଖାଏ । ମୁଁ ଖୁବ୍ ଡେଙ୍ଗା ହୋଇଥିବାରୁ ଗୋଟାଏ ଉଚ୍ଚଆସନରେ କିଛି ଗୋଟାଏ କରିବାକୁ ଥିବ ସେଥିଲାଗି ଡାକି-ପାରିଥିବେ । ନା । ସେଇଟା ଉଚିତ ହେଉନି । ସେମାନେ ଉଞ୍ଚା ଟୁଲ ପକାଇ କମ୍ପା ଶିଡ଼ିଟାରେ ଚଢ଼ି କାମ କରିପାରିବେ । ତେଣୁ ମୋଭଳି ଗୋଟାଏ ଜୀବନ ଶିଢ଼ିକୁ ଡାକିବେ କିଆଁ । ହୋଇପାରେ ସେଦିନ ଅନୁଷ୍ଠାନରେ ଗୁହା ଆଉ ପାନ ବହୁତ ବଳିପଡ଼ିବାର ସମ୍ଭାବନା ରହିଛି । ମୁଁ ସେଠାରେ ଉପସ୍ଥିତ ରହିଲେ ସେଗୁଡ଼ିକର ସଦ୍‌ବ୍ୟବହାର ହୋଇଯିବ । ନାଃ ଏହା ବି ମନକୁ ପାଉନି । ଆଜିକାଲି ଯେଉଁଠି ଗୁହା, ପାନ ଥିବ ସେଠି ଲୋକଙ୍କର ଭିଡ଼ ଯଥେଷ୍ଟ ରହିବ । ଗୁହା, ପାନରେ ମୋର ରେକର୍ଡ଼ ଭାଙ୍ଗିବା ଭଳି ବହୁତ ଲୋକ ଦେଖା ଦେଲେଣି । ତେବେ ଆଉ କଅଣ ହୋଇପାରେ ? ହଁ । ହେଲା ହେଲା—ସାହିତ୍ୟ ସମାଜ ତରଫରୁ ଜଣେ ସିନେଟ୍‌କୁ ନିର୍ବାଚିତ ହୋଇ ଆସିବାର କଥା, ସେହି ବିଷୟରେ କିଛି ପରାମର୍ଶ କରିବା ବୋଧହୁଏ ଦରକାର ପଡ଼ୁଛି । ଉଁ ହୁଁ ମନ ମାନୁନି ! ଏଥିପାଇଁ ଗୋଟାଏ ନିମନ୍ତ୍ରଣ ପତ୍ର କିଆଁ ? ସିଧାସଳଖ ଯେ ମୋତେ ପଚାରି ଦେଇପାରି ଥାଆନ୍ତେ । ତା'ବି ନୁହେଁ । ଆଉ ତେବେ କଅଣ, ଆଉ ତେବେ ଲେମ୍ବୁ

ଲୁଣ ! ଚିଠିଟି ନ ପଢ଼ିଲେ କିଛି ମଥାକୁ ପଶିବ ନାହିଁ । ଚିଠିଟାକୁ ସେ ପଢ଼ିଗଲେ । ଚିଠିଟି ଗୂଢ଼ ଗୂଢ଼କୁ ଗୃହାଁଲେ ସତେକି ଯେପରି ଚିଠିରେ ଗୂଢ଼କଥା ଲେଖାହୋଇଛି । ଚିଠିକୁ ଦୁଇଥର ପଢ଼ି ଦୁଇଥର ଗୂଢ଼କୁ ଗୃହାଁଲେ । ପାଖରେ ଯଦି ଜଣେ କିଏ ବସିଥାଆନ୍ତା ତେବେ ସେ ନିଶ୍ଚୟ ଅନୁମାନ କରିନିଅନ୍ତା ଯେ ଚିଠିରେ କିଛି ଗୋଟାଏ ଜଟିଳ—ସମସ୍ୟାର ଉଲ୍ଲେଖ ରହିଛି, ଆଉ ତାର ସମାଧାନର ସୂତ୍ର ଗୂଢ଼ତରେ ଲେଖା ହୋଇଛି । ଶେଷରେ ତାଙ୍କ ପାଟିରୁ ଅନୁଚ୍ଚ ଗଳାରେ ଶବ୍ଦ ବାହାରିଲା—"ଦ୍ୱାଦଶାବଧାନୀ" ଏ ଫେର ଗୋଟାଏ କି ଜୀବ ! ଏ ପୁଣି ଆଜି ସନ୍ଧ୍ୟାରେ ଶ୍ରୀରାମଚନ୍ଦ୍ର ଭବନରେ ନିଜର ବିଚକ୍ଷଣତା ଦେଖାଇବେ । ଏପରି ଏକ ନାଆଁ ସେ ଆଗରୁ କୌଣସିଠାରେ ଶୁଣି ନାହାନ୍ତି । "ଦ୍ୱାଦଶାବଧାନୀ" ଶ୍ରୀଯୁକ୍ତ ହୟଗ୍ରୀବ ଦାସ ନିଜ ପ୍ରତିଭାର ପରିଚୟ ଦେବେ । ଅବଧାନ ତ ଦୁଇ ତିନି ପ୍ରକାର ଜଣାଅଛି ଯଥା ମାଟିବଂଶିଆ ଅବଧାନ, ଗୋପାଳପୁରିଆ ଅବଧାନ, କୋଚିଲାଖଣ୍ଡର ଅବଧାନ । ଦ୍ୱାଦଶାବଧାନୀ ବୋଇଲେ ବାରଟା ଅବଧାନର କାରବାର—ନାଃ, ମୁଣ୍ଡରେ କିଛି ପଶୁନି । ଆଜି ସନ୍ଧ୍ୟାବେଳକୁ ସବୁକାମ ଛାଡ଼ି ଶ୍ରୀରାମଚନ୍ଦ୍ର ଭବନକୁ ଯିବ । ଗୋଟାଏ ନୂଆ ଜିନିଷ ଦେଖିନେବ ।

ଅଫିସରୁ ଫେରୁ ଫେରୁ ଟିକିଏ ଡେରି ହୋଇଯାଇଥାଏ । ତରବର ହୋଇ ମାହାନ୍ତିଏ ଶ୍ରୀରାମଚନ୍ଦ୍ର ଭବନ ଆଡ଼େ ବାହାରି ପଡ଼ିଲେ । ଗୃହିଣୀ ପଚାରିଲେ —

"ଏଡେ ତରବର କିଆଁ ? ଗୃହା ଖାଇବ ନାହିଁ କି ?"
"ମାରିଗୋଲି ସେ ଗୃହାକୁ । ଆଜି ତର ନାହିଁ ।"
"ତେବେ ଟିକିଏ ଠିଆହୁଅ, ପାନ ଖଣ୍ଡେ ଭାଙ୍ଗି ଦେଉଛି ।"
"ଆରେ ରଖ ହୋ ତମ ପାନ, ଆଜି କିଛି ରୁଚିବନି ।"

ଗୃହିଣୀ ଆଉ କିଛି କହିବାକୁ ଯାଉଥିଲେ ! ହେଲେ ମାହାନ୍ତିଏ ଚୁରଫୁଟିଆ ପାଦମାନ ପକାଇ ଅନ୍ତର୍ଦ୍ଧାନ ହୋଇଯାଇଥିଲେ । ବାଟରେ ରବି ମହାପାତ୍ର ସେହିଆଡ଼େ ଯାଉଥିବାର ଦେଖି ତାଙ୍କର ସାଥି ହେଲେ ।

ଟଜିନଟ ମାଝ ଧାଇଁ ରବ ମହାପାବେ ହାମେଇ ଗଲେ, ଆଉ ପାଟିରେ ଉଠିଲେ—ଆହେ ମହାନାଏ, ସେ ଦୁଇଟା ତୁମର ଗୋଡ଼ ନା ସ୍କୁଟର । ତୁମ ସାଙ୍ଗରେ ଆଉ ପଞ୍ଚମିନଟ ଗ୍ଳଲେ ମୁଁ ଫାଁ । ଗାଳ ପଡ଼ିବି ଯେ ।

ମାହାନ୍ତାଏ ବେଗ କମେଇ କହିଲେ—ଚଞ୍ଚଳ ଚ଼ଲ, ଗୋଟାଏ ଅଜବ ଅବଧାନ ଆଜ ଶ୍ରୀରାମଚନ୍ଦ୍ର ଭବନରେ କଅଣ ସବୁ କସରତ ଦେଖେଇବ । ତା କସରତଟା ମୂଳରୁ ନ ଦେଖିଲେ ମନଟା ମାନିବନି । ସେଇଥିଲାଗି ତରବର ହେଉଛୁ ।

ରବ ମହାପାବେ ହାମେଇ କହିଲେ—"ଆଃ ! ଗୋଟାଏ ଅବଧାନ ତ ? ଆଗକାଳେ କେମିତି ପାଠ ପଢ଼ାଉଥିଲେ ସେଇଆ ଦେଖେଇବ । ଅବଶ୍ୟ ଅଜକାଲିକ ସେଇଟା ଗୁର କଉତୁକଆ ହବ । ଲୋକେ ସେ ସବୁ ଭୁଲିଗଲେଣି । ଏଥିପାଇଁ ଏତେ ତରତର କାହିଁ ?"

"ଆରେ ନାହିଁ ହୋ ଗୋଟ ଏ ଅବଧାନ ନୁହେଁ, ଗୋଟାକ ଭିତରେ ବାରଟା ଅବଧାନ । କିଛି ଠଉରେଇ ପାରୁନ ।"

"ଆରେ ଏଥିରେ ନ ଠଉରେଇବାର କଥା କଅଣ ରହିଗଲା ଯେ ? ଗୋଟାଏ ଅବଧାନ ବାରଟା ଅବଧାନର କାମ କରୁଥିବ । ମତେ ଜଳଜଳ ହୋଇ ଦିଶିଲଣି । ବାରଟା ଗୁଟ ଆଗରେ ଗୋଟାଏ ଅବଧାନ ବସିଥିବ । ଏକା ସାଙ୍ଗରେ ବାରଟା କାମ କରୁଥିବ । ଜଣକୁ କହୁଥିବ—ହଇରେ ବସିଛୁ କାହିଁକି ? ତାର ସଙ୍ଗେ ସଙ୍ଗେ ଆଉ ଜଣକୁ କହୁଥିବ—ହୁଁ ଘୋଷ୍ ଦୁଇ ଚଉ ଆଠ ପଣ । ହଇରେ ତତେ ପର ପଚାରିଥିଲି ଛଅ କାହାଣ ଗୁଣପଣ କେଉଁଠି ଅଛୁ । ଜଣେ ଅମନୋଯୋଗୀ ଗୁଟକୁ ଡାହାଣ ହାତରେ ବେତ ତ ଆଉ ହାତରେ କୋଳଗାତ ମଚକାଇ ପ୍ରଖରଭାବେ କୁଣ୍ଡେଇ ଲଗିଥିବେ । ଟିକିଏ ଫାଙ୍କରେ ବଟୁଆରୁ ସରଞ୍ଜାମ କାଢ଼ି ପାନ ପ୍ରସ୍ତୁତରେ ଲଗିଥିବେ । ତା'ର ଭିତରେ ଗୋଟାଏ ଗୁଟକୁ ଧମକାଉଥିବେ—ହଇରେ ତୋ ଘରୁ କିଛି ଦୋକତା ପତ୍ର ଲୁଚେଇ ଆଣିବାକୁ ପର କହିଥିଲି ଆଣିଛୁ ? ସଙ୍ଗେ ସଙ୍ଗେ ଆସନରୁ ରକ୍ତପାନକାରୀ ଏକ ଉଡ଼ଣକୁ ମକଚି ଦେଉଥିବେ । ମଝିରେ କୁହାଟୁଥିବେ ଆରେ ତିନିକ ପଣିକିଆ

ମୂର୍ଖଙ୍କ ହେଲା ? ଉତ୍ତରକୁ ଅପେକ୍ଷା ନ କରି ଆଉ ଜଣକୁ କହୁଥିବେ— ଯାଆରେ ଯା ତୋତେ ଦୁଇ ଦେଖାଇଲିଣି ବୋଲି କହୁଥିଲୁ ଯା'। ଫେରିଲା ବେଳେ ଘରୁ ଛପଡ଼ା ଆମ୍ବୁଲ ଆଣିବୁ । କୋମଳ ପରେ ପରେ କଡ଼ା ପରଦା— ମୂର୍ଖ ବକ୍ତୃତା ଓ ହନୁ ମିଙ୍କର ପରି ଶେଷ ଚୂଟ ପ୍ରଭୁ ରୁକ୍ଷବାଣୀ — ଏଁ ଃ ହାଇରେ ଅଳପେଇସା ଲକ୍ଷ୍ମୀଛଡ଼ା ବାହାକୁ ଚାହୁଁଛୁ ନା ଗାତକୁ ଚାହୁଁଛୁ । ମାତ୍ର କେଇ ସେକେଣ୍ଡ ଭିତରେ ଏତକ ସବୁ କରୁଥିବ । ବାରଟା ଅବଧାନଙ୍କ କାମ ଏକାକରି ଦେଉଥିବ । ଅବଶ୍ୟ ଟିକିଏ ମଜା ଲାଗିବ ଦେଖିବାକୁ । ଟିକିଏ ଆସ୍ତେ ଚାଲ ବାବା । ଡେରି କେବେହେଲେ ହେବ ନାହିଁ । ମୋତେ ଆଉ ଅଧିକ ହାଲିଆ କର ନାହିଁ ।

ଶ୍ରୀରାମଚନ୍ଦ୍ର ଭବନରେ ପଶି ଦୁହେଁ ଆଗ ଧାଡ଼ିରେ ବସିଗଲେ । ଲୋକସମାଗମ ହୋଇ ନ ଥାଏ । କେବଳ ସମ୍ପାଦକ ବର୍ମାଏ ଧଡ଼ ଧଣ୍ଡି ବେଳ ଉଡ଼ି ଗୁଡ଼ୁଥାଆନ୍ତି । ଅଧଘଣ୍ଟା ପରେ ଲୋକେ ଆସିଲେ । ସେତିକବେଳେ ଜେନା କବି ମୁରାରି ମୋହନଙ୍କ ଆବିର୍ଭାବ ହେଲା । ସଙ୍ଗେ ସଙ୍ଗେ ଦୁଇ ସମ୍ପାଦକ ବର୍ମା ଓ ଜେନାଙ୍କ ଭିତରେ ଟିକିଏ ଭଣ୍ଡା-ଓଟଙ୍କ ବି ଲାଗିଗଲା । ବର୍ମା କହିଲେ ସାହିତ୍ୟ ସମାଜର କର୍ମକର୍ତ୍ତା ପହିଲେ ଆସିବା ଉଚିତ । ଜେନାଏ କହିଲେ ତା ଠିକ୍ ଯେ ଲେବର ଅଫିସର ଝିନଟଙ୍କ୍ ସରିଲେ ତ ଆସିବ । ପଛରୁ ରବି ମହାପାତ୍ରେ ଗୋଟାଏ ସାଲିସ କଥା କହିଦେଲେ—"ପ୍ରକୃତ କଥା ଲେବରପେନ ନ ଥମିଲେ ଆଉ କିଛି କଥା ମୁଣ୍ଡରେ ପୂରେଇବା ସମ୍ଭବ ନୁହେଁ । ଆଚ୍ଛା ତୁମ ଅବଧାନ କାହାନ୍ତି ? ବର୍ମା ମହାପାତ୍ରଙ୍କ ପାଖକୁ ଆସି ଚୁପୁ ଚୁପୁ କରି କହିଲେ— ସେପାଖ ଘରେ ବସିଛନ୍ତି । ଘଣ୍ଟାଏ ହେଲା ଆସିଲେଣି । ଲୋକଙ୍କ ଦେଖା ନାହିଁ । ଚାହା ଜଳଖିଆ କରୁଛନ୍ତି । ଡେରି ତ ହେଲାଣି, ଆଉ ଟିକିଏ ହେଉ । ଆଉ କିଛି ଲୋକ ଆସିଗଲେ ଆରମ୍ଭ କରିଦେବା ।

ଧାର୍ଯ୍ୟ ସମୟର ଠିକ୍ ଦେଢ଼ଘଣ୍ଟା ପରେ ସଭାକାର୍ଯ୍ୟ ଆରମ୍ଭ ହେଲା । ସଭାପତିଙ୍କ ସହ ଅତିଥି ମଣ୍ଡପରେ ଆସି ବସିବାମାତ୍ରେ ବର୍ମାଏ ଫୁଲହାରଟାଏ ନେଇ ତାଙ୍କ ବେକରେ ପକାଇଦେଲେ । ସାଙ୍ଗେ ସାଙ୍ଗେ ପରମାନନ୍ଦ ଉଦ୍‌ଧିକାରୀ ବର୍ମାଙ୍କୁ କଡ଼କୁ ଟାଣିନେଇ ଫୁସୁଫୁସୁ କରି କହିଲେ

"କ୍ରମେ ଏ କି କାଣ୍ଡ କଲ । ଫୁଲମାଳ ଦେବାକୁ ମୁଁ ଯେଉଁ ଝିଅଟିକୁ ଆଣିଥିଲି ସେ କଅଣ କରିବ, ଆଉ ତା ବାପ ମୋତେ କଅଣ କହିବ ?"

"କାହିଁକି ? ଆଉ ଗୋଟାଏ ଫୁଲହାର ଆଣି ତା ହାତରେ ଧରେଇ ପକେଇ ଦଉନ ?"

"ଛାଡ଼ ହେ। ସେ କଥା, ମୁଁ ଏଇକ୍ଷଣି କୁଆଡ଼େ ଯିବି, ଠଙ୍କା କେଉଁଠୁ ଆଣିବି, ହାର କେଉଁଠି ଖୋଜିବି, ଛାଡ଼ ସେ କଥା । ଯାହା ହେବାର ହେଲାଣି ।"

ଭବନଟି ଅଧାଅଧି ପୂର୍ଣ୍ଣ ହୋଇଯିବାରୁ ସଭାପତି ଦାଶ ଆପଣେ ଠିଆ ହୋଇପଡ଼ି ଅତିଥିଙ୍କ ପରିଚୟ ଦେଲେ—"ଆଜି ଆମ ଗହଣରେ ଯେଉଁ ମହାନ୍ ଅତିଥି ଅଛନ୍ତି ସେ ହେଉଛନ୍ତି ଆଠଗଡ଼ର ବିଖ୍ୟାତ ଦ୍ୱାଦଶାବଧାନୀ ଶ୍ରୀଯୁକ୍ତ ଜଗନ୍ନାଥ ରଥ । କବିସୂର୍ଯ୍ୟ ବଳଦେବ ରଥଙ୍କ ବଂଶଧର—"

"ରବି ମହାପାତ୍ରେ ସଭାପତିଙ୍କୁ ଝୁଣ୍ଟେଇ ଚଳେଇ ଉଠିଲେ ନାହାକମାନେ ତ ଅବଧାନ ହୁଅନ୍ତି, ରଥ ଅବଧାନ ହେଲେ କପରି ?"

ସଭାପତି କହି ଲଗିଲେ—"ଧୈର୍ଯ୍ୟ ଧରନ୍ତୁ ମୁଁ ସେହି ଆଡ଼କୁ ଯାଉଛି । ସେ ଜଉତିଷୀ ଅବଧାନ ନୁହନ୍ତି କି ଭାଟବୋଲି କି ଗୃହାଳିଆ ଅବଧାନ ନୁହନ୍ତି । ସେ ହେଉଛନ୍ତି ଅବଧାନୀ ଯେ କି କଥାଟାଏ ଶୁଣିବା ମାତ୍ରେ ତାର ସାର ଭଙ୍ଗ କରିପକାନ୍ତି, କଥାଟିର ଚଟାପଟ୍ ଉତ୍ତର ଦିଅନ୍ତି । ସେ ପୁଣି ଗୋଟିଏ କଥାର ଅବଧାନୀ ବା ଏକାବଧାନୀ ନୁହନ୍ତି । ଏକାବେଳକେ ଦ୍ୱାଦଶାବଧାନୀ, ଅର୍ଥାତ୍ ବାରଟା ପ୍ରଶ୍ନ ବା କଥା ଏକାବେଳକେ ଶୁଣି ତାର ଉତ୍ତର ବା ମୀମାଂସା କରିଥାନ୍ତି । ଆପଣମାନଙ୍କ ଭିତରୁ ବାର ଜଣ କବି ଏଠାକୁ ଆସି ମହାଶୟଙ୍କୁ ଲଗଲଗ ବାରଟି ପ୍ରଶ୍ନ ପଚାରି-ଯାଆନ୍ତୁ । ଗୋଟିଏ ପ୍ରଶ୍ନ ବିଷୟରେ ମହାଶୟଙ୍କୁ ଭାବିବାକୁ ସମୟ ଦେବେ-

ନାହିଁ । ପ୍ରଥମ ପ୍ରଶ୍ନର ଶେଷ ଓ ଦ୍ୱିତୀୟ ପ୍ରଶ୍ନର ଆରମ୍ଭ ଭିତରେ ବ୍ୟବଧାନ ମୁହୂର୍ତ୍ତେ ବି ରହିବ ନାହିଁ । ପ୍ରଶ୍ନଗୁଡ଼ିକ କବିତ୍ୱପୂର୍ଣ୍ଣ ହେବା ଉଚିତ୍ । ଏବେ ବାରଜଣ କବି ଆସିବା ହୁଅନ୍ତୁ ।”

ନୀଳମଣି ମାହାନ୍ତି ଏକା ପାହୁଲରେ ମଣ୍ଡପ ଉପରେ ହାଜର ହୋଇଗଲେ । ତାଙ୍କ ପଛେ ପଛେ ଭୁଷ୍‌ଭାଷ ହୋଇ ଏଗାରଜଣ ମଣ୍ଡପ ଉପରକୁ ଉଠିଗଲେ । ଗୋଟିଏ ଧାଡ଼ିରେ ପହିଲେ ଋଣପା କବି, ତାଙ୍କ କଡ଼କୁ ଜେନାକବି, ତାଙ୍କ କଡ଼କୁ ଷେଣ୍ଢକବି, ଏହିପରି ସୂର୍ଯ୍ୟ କବି, ତାରା କବି, ନକ୍ଷତ୍ର କବି, ଧୂମକେତୁ କବି, ଉଲ୍‌କା କବି, ରକେଟ୍ କବି ଆଦି ଠିଆ ହୋଇଯାଇ ପ୍ରଶ୍ନବାଣମାନ ସଜ କଲେ । ସଭାପତି ଆରମ୍ଭ ସଙ୍କେତ ଦେବାମାତ୍ରେ ଋଣପା କବିଙ୍କଠାରୁ ଆରମ୍ଭ ହୋଇ ପ୍ରଶ୍ନ ସବୁ ମେସିନ୍‌ଗନ୍ ଗୁଳିପରି ସନାସନ୍ ଏହିପରି ଭାବରେ ଛୁଟିଗଲା ।

(୧) ଦେଶ ସଂସ୍କୃତିର କିଏ ଅଟଇ ବାହନ ? (୨) ତରକାରୀ ପାଇଁ ଲୋଡ଼ା କେଉଁ ଦ୍ରବ୍ୟମାନ ? (୩) କେଉଁଠାକୁ ଯା’ନ୍ତି ଲୋକେ ମାଲିଶ କିଣି ? (୪) କିସ ଗଢ଼ି ଥାନ୍ତି ନେତା ନିର୍ବାଚନ ଜିଣି ? (୫) ତେଲରେ ଅଗରି କିଏ କରଇ ମିଶ୍ରଣ ? (୬) କେଉଁମାନେ ଆସିଛନ୍ତି ଆଜ ଏ ଭବନ ? (୭) ଶୀତଦିନ ଫସଲେ କେ ଅଧିକ ବଢ଼ାଇ ? (୮) କି କାମ କରଇ ସାହୁ ବଣିଜ ମେଲାଇ ? (୯) ପଢ଼ୁଆ ପିଲାଙ୍କୁ ଗୁରୁ କି ବୋଲି ପ୍ରଶଂସେ ? (୧୦) ଧରାରେ ମଳୟବାତ କିପରି ପରଶେ ? (୧୧) ପୁଲିସ ଜେରାରେ ଚୋର କି କହଇ ଆଗ ? (୧୨) କେଉଁପରି ଟଙ୍କା ରଖେ ହୁସିଆର ଲୋକ ?

ଦ୍ୱାଦଶାବଧାନୀ ଶେଷ ପ୍ରଶ୍ନର ଶେଷରେ ଯୋଖିଦେଲେ ସାହିତ୍ୟ ପରିବା-ହାଟେ ସର୍କାର ଦୋକାନୀ, କବି-କୋବି ବିକେ ଭଲ ମନ୍ଦ ନାହିଁ ଜାଣି । ଉତ୍ତରରେ ଶବ୍ଦଗୁଡ଼ିକ ଯଥାକ୍ରମରେ ପ୍ରଶ୍ନଗୁଡ଼ିକର ଉତ୍ତର ।

ପହିଲେ ପ୍ରଶ୍ନକର୍ତ୍ତାମାନେ ଛନ୍ଦୁର ମନ୍ଦୁର ହୋଇଗଲେ । ଗୋଟି ଗୋଟି କରି ମିଳେଇ ଦେଖିଲେ ଉତ୍ତର ଠିକ୍ ଖାପିଯାଉଛି । ଶ୍ରୋତାମାନଙ୍କୁ ସରଳଭାବରେ ବର୍ମାଏ ବୁଝାଇଦେଲେ ସଂସ୍କୃତିର ବାହକ

[ସାହିତ୍ୟ], ତରକାରୀ ପାଇଁ ଲୋଡ଼ା (ପରବା), ମାଲପତ୍ର କିଣିବାକୁ ଲୋକେ ଯାଆନ୍ତି (ହାଟେ) କବାଟବନ୍ଦରେ ଜନ୍ତିଲେ ଲୋକେ ଗଡନ୍ତି [ସରକାର], ତେଲରେ ଅଗର୍ଗ ମିଶାଏ ଦୋକାନୀ, ଅଜ ଏ ଭବନକୁ ଆସିଛନ୍ତି (କବ), ଶୀତଦିନେ ବେଶି ବନ୍ଦି ହେଉଥିବା ପରବା (କୋବି), ସାହୁ ବା ଦୋକାନୀ ଦୋକାନ ଖୋଲ (ବକେ), ପଢୁଆ ପିଲାକୁ ଗୁରୁ କହେ (ଭଲ)। ମଳପୁର ପରଶଟା (ମନ୍ଦ) ଅର୍ଥାତ ଧୀର । ଘ୍ରେରକୁ ପୁଲିସ ଯଦି ପଗ୍ଗରେ ହଇରେ ଘ୍ରେର କରୁଛୁ ? ସେ କହେ (ନାହିଁ) । ହୁସିଆର ଲୋକ ଟଙ୍କା ରଖେ [ଗଣି] ଏବେ । ବନ୍ଧନୀରେ ଥିବା ଶବ୍ଦଗୁଡ଼ିକୁ କ୍ରମାନ୍ୱୟରେ ପଢ଼ିଗଲେ ବାହାରୁଛି—ସାହିତ୍ୟ ପରବା ହାଟେ ସର୍କାର ଦୋକାନୀ, କବ କୋବ ବକେ ଭଲମନ୍ଦ ନାହିଁ ଗଣି ।

ସମସ୍ତେ ଦ୍ୱାଦଶାବଧାମୀଙ୍କ ପ୍ରତିଭାର ତାରିଫ କରି ତାଳିରେ ତାଳିରେ ଘରଟାକୁ ଥରାଇ ଦେଲେ । ମାହାତ୍ମାଏ ଏତେ ଖୁସ୍ ହୋଇଗଲେ ଯେ ତାଳି ବନ୍ଦ ହେବାର ୧୦ ସେକେଣ୍ଡ ପର୍ଯ୍ୟନ୍ତ ସେ ଏକୁଟିଆ ବଜେଇ ଲାଗିଥିଲେ । ଚେତା ଆସିଯିବାରୁ ସେ ପଟ୍‌କରି ବନ୍ଦ କରିଦେଲେ । ଲାଗିଲାଣି ଏହିପରି ୪।୫ଟା ଅବଧାନିଆ କରାମତିର ପ୍ରଦର୍ଶନ କରାଗଲା । କିଏ ପିଉ ବା ନ ପିଉ ମାହାତ୍ମାଏ ଚକ ଚକ କରି ପିଇ ଯାଉଥାନ୍ତି । ବେଳେ ବେଳେ ଆଗତୁରା ତାଳି ମାରି ଦେଉଥାନ୍ତି, ଯେତେବେଳେ ଜାଣୁଥାଆନ୍ତି ତାଳି ମାରିବାକୁ ତାଙ୍କ ସଙ୍ଗେ ଆଉ ଦ୍ୱିତୀୟ ଲୋକ କେହି ନାହାନ୍ତି ସେ ଗୁରିଆଡ଼କୁ ଗ୍ରହିଁଦେଇ ପଟକରି ବନ୍ଦ କରିଦେଉଥାଆନ୍ତି ।

ଭବନରୁ ବାହାରିଲାବେଳେ ସେ ପୁଣି ରବି ମହାପାତ୍ରଙ୍କ ସାଙ୍ଗ ଧରିଲେ । ଅବଧାନଙ୍କୁ କରୁଥିବା ପ୍ରଶଂସାରୁ କିଛି ପେଟରେ କେଉଁଠି ଲାଗି ରହିଯାଇଥିଲା, ବାଟରେ ତାଙ୍କୁ ଭକ୍‌କରି ଓକାଳି ପକେଇଲେ— "ଜାଣିଲ ମହାପାତ୍ରେ, ଏପରି କ୍ଷଣଜନ୍ମା, ତୀକ୍ଷ୍ଣ, ବିଚକ୍ଷଣ ବୁଦ୍ଧିଶକ୍ତି ବିଶିଷ୍ଟ ମହାତ୍ମା ସାରା ପୃଥିବୀରେ ଆଜିକାଲି କେହି ଦ୍ୱିତୀୟ ଥିବେ କି ନା ସନ୍ଦେହ । କଅଣ କହୁଛ ?"

ମୁହଁଟାକୁ ବୁଲେଇ ନେଇ ମହାପାତ୍ରେ କହିଲେ—"ହଇହେ ମାହାତ୍ମାଏ ! ତାଙ୍କଠାରୁ ବନାରସୀ ଖିଲିପାନ ଦି ଗୁରିଖଣ୍ଡି ଖାଇଯାଇଛ

କ ? କଅଣ ଗୋଟାଏ ଫେଖି ପକେଇଲ ଯେ ଏକାବେଳକେ ପ୍ରଶଂସା ମୁଣିର ଭୋର ହୁଗାଳ ଦେଲ । ଗଲା ଗଲ୍ ଗଲ୍ ହୋଇ ବାହାରୁଛୁ; କଅଣ କିଛି ଲକ୍ଷଣ ଦିଶୁ ନାହିଁ ।”

“ମୁଁ ଜାଣେ ପରା ସମସ୍ତେ ଯାହାର ତାରିଫ୍ କରିବେ, ତୁମେ ନିଶ୍ଚୟ ଆଗ ତାହାର ଗୋଟାଏ କିଛି ବଦ୍‌ଗୁଣର ଖିଅକୁ ଧରିପକାଇ ଆପଣା କାମରେ ଲାଗିଯିବ । ଦେଖିଛ ଭଲ ଏମିତିଆ ଲୋକ କୋଉଠି ?”

“ଆରେ କ ବାର ଅବଧାନୀ ଦେଖଉଛ ହେ । ମୁଁ ତ ନିତି ଗୋଟାଏ କୋଡ଼ିଏ କ ଭରିଣି ଅବଧାନୀର କରାମତି ଦେଖୁଛି ।”

“ଆଉ ଆଉ ତମ ଉଡ଼ାଣ କଥା । ଠିକଏ ସୀମାରେ ରୁହ ।”

“ଠିକ୍ ଅଛି କାଲି ସକାଳେ ମୁଁ ତୁମକୁ ନେଇଯିବି ତା ପାଖକୁ । ନିଜେ ଆଖିରେ ଦେଖିଲେ ଓ କାନରେ ଶୁଣିଲେ ମନ ମାନିଯିବ ତ ?”

“ହଁ, ହଁ, ଜରୁର୍ ଜରୁର୍ ।”

× × ×

ପରଦିନ ସକାଳୁ ମହାପାତ୍ରେ ମାହାନ୍ତାଙ୍କୁ ସାଙ୍ଗରେ ଧରି ଗଉରା ସାହୁ ଦୋକାନରେ ପହଞ୍ଚିଲେ । ମାହାନ୍ତା ଭକୁଆ ହୋଇ ତାଙ୍କ ମୁହଁକୁ ଗୁହିଁ କହିଲେ କହୋ ତମେ ତମ ବଂଶାବଧାନୀ ପାଖକୁ ନେବ ପରା ?

“ଅଧୁଧର ବଂଶାବଧାନୀ ଏହିକ୍ଷଣି ଆସି ଏହି ଗଦିରେ ବସିବେ । ଚୁପ୍‌ଚାପ ଠିଆ ହୁଅ ।”

ଦୋକାନରେ ପ୍ରାୟ ୨୦।୩୦ ଲୋକ ଭିଡ଼ ଜମେଇ ଥାଆନ୍ତି । କିଛି ସମୟ ପରେ ଗଉରା ସାହୁ ଘରଭିତରୁ ନସରପସର ହୋଇ ଆସି ଗଦିରେ ବସିଲା, ଆଉ ପଛଆଡ଼ କାନ୍ଥକୁଥରେ ଥିବା ସିନ୍ଦୂରବୋଳା ଗଣେଶ ମୂର୍ତ୍ତିଇକୁ ମୁଣ୍ଡ ଆଟିଏ ମାରି ସଜବାଜ ହୋଇ ବସିଲା ଆଉ ହାକିଲା— “ହଁ କାହାର କଅଣ ଦରକାର ?”

କୋଡ଼ିଏ ଛରିଶିଟା ଲୋକ କୁଆବସାରେ ଚେମଣା ପଶିଲା ପରେ ଗୋଳ୍ ଆରମ୍ଭ କରିଦେଲେ । ସେହି ଗୋଳ ଭିତରେ ମହାପାତ୍ରେ ହି ଯୋଖିଦେଲେ—କାପଷ୍ଟେନ ସିଗାରେଟ ଏକ ପ୍ୟାକେଟ୍ । ସେହି ଗୋଳ ଭିତରେ ଗଉରୀ ସାହୁ ସମସ୍ତଙ୍କ ଠାରୁ ଆଗ ଜଣ ଜଣ କରି ଶୁଣିଗଲା । ତାପରେ ସମସ୍ତଙ୍କୁ ଚୁପ୍ ହେବାକୁ କହିଲା—"ବାସ୍ ବାସ୍ ଆଜି କେହି କିଛି ପାଟିକରନା, ମୁଁ ସଉଦା ଜଣ ଜଣ କରି ଦଉଚି । ଟିକିଏ ସବୁରିତ କର । ଗୋଳ କଲେ ଗଡ଼୍‌ବଡ଼୍ ହୋଇଯିବ । ହଁ ବାବୁ ନିଅ ସିଗ୍ରେଟ୍, ଦିଅ ଟଙ୍କାଏ, ହଁ ବାବୁ ନିଅ ବାବୁ ୧୦୦ ଖାଗୀ, ଦିଅ ତିନି ଟଙ୍କା, ବାବୁ ଅମୁଲ ସରିଯାଇଛି ପଅରଦିନ ଇଷ୍ଟାକ ଆସିବ । ହଁ ବାବୁ ଚିନି ୨୫୦ ନିଅ । ଏ ଖୋଲା ବଜାର ଚିନି ଟଙ୍କେ ପାଞ୍ଚ ପଇସା ଦିଅ । ନାହିଁରେ ପିଲା ଡାଲଚିନି ନାହିଁ । ହୁଁ ନିଅ ଲଙ୍କା ୧୦୦ ଆଣ ଦେଢ଼ ଟଙ୍କା—କଅଣ ସପ୍‌ଲେନ ପିଉନବାବୁ ତେମେ ଆପଣ ଯାଆନ୍ତୁ, ମୁଁ ଘରକୁ ପଠେଇଦେବି । ଆରେ ନାହିଁ ନାହିଁ ଧାର ନାହିଁ, ଧାର ଘରେ ପାହାର । ଯା ଯା ଆଗ ବାକିଆ ଟଙ୍କା ଆଣ ।......

ଏହିପରି ଗଉରୀ ସାହୁ ଏକା ନିଶ୍ୱାସକେ ୨୦।୩୦ ଜଣ ଖାଉଟିଙ୍କ କଥା ମନେ ରଖି ଠିକ୍ ଠିକ୍ ସଉଦା ବା ଉତ୍ତର ଦେଲା । ଗୋଟାଏ ହେଲେ ଓଲମ୍ ବଲମ୍ ହେଲା ନାହିଁ ।

ମାହାନ୍ତିଏ ଦୋକାନରୁ ଫେରିଆସିବାବେଳେ ମହାପାତ୍ରଙ୍କୁ ତାରିଫ୍ କରି କହିଲେ—"ବାସ୍ତବିକ ତୁମ ବଂଶାବଧାମୀ ବା ହିଂଶାବ-ଧାମୀଙ୍କୁ ଦିନେ ଶ୍ରୀରାମଚନ୍ଦ୍ର ଭବନକୁ ନେଇଯିବା ।"



# କାଣ୍ଟୁଆ ସଭାପତି

ପରମାନନ୍ଦ ଅଧିକାରୀ ଓରଫ ପର୍ମାନେଣ୍ଟ ଅଧିକାରୀ ଗୁଡ଼ି ପାଞ୍ଚଜଣ ସାଙ୍ଗଙ୍କୁ ଧରି ବୁଲଡଜର କବି ରବିନାରାୟଣ ମହାପାତ୍ରଙ୍କ ଘରେ ସକାଳୁ ସକାଳୁ ଯାଇ ପହଞ୍ଚିଲେ । ମହାପାତ୍ରେ ଅଧିକାରୀଙ୍କୁ ଦେଖିବାମାତ୍ରେ ବଳ-ବଳେଇ ଉଠିଲେ—"ଅଦ୍ୟ ପାତରେବା……"

ଅଧିକାରୀଏ ବାଧାଦେଇ କହି ଉଠିଲେ, "ନା…ନା…ହୋ… ଆମେ କାହାର ଅନିଷ୍ଟ କରୁନା, ଆମ ଦୁଃଖରେ ଆମେ ଚୁପ୍‌ଚାପ ଥାଉ । ସଭିଏ ଭଲ ତ ଆମେ ଭଲ । ରାମା ଦାମା ଶାମା ଯିଏ ନାହିଁ ସିଏ ସଭିଏ କଲେ ଆମେ ବି ସ୍କୁଲଟି ଝିଅଙ୍କୁ ଗୋଟିଆ ଗୋଟେଇ କରି ସେଠି ପହଞ୍ଚୁ, ଆଉ ସେମାନଙ୍କ ନାଚ ଗୀତ ପରିବେଷଣ କରାଇ ତାଙ୍କ ସଭାଟିକୁ ଜମେଇଦେଉ । ଆମେ ହେଲୁ ହୋମିଓପାଥି କବି । କେବଳ ଉପକାର କରୁ, ଅପକାର ଆମ ଦ୍ୱାରା ହୋଇପାରେ ନା । ଦେଖିଛ କେବେ ଆମେ କାହାକୁ ସଭାରେ ଗାଳିଗୁଲଜ କରିଛୁ ? ପଦେ କଡ଼ା କଥା କାହାକୁ କହିଛୁ ନା ? ଆଜିକାଲି ତ ସଭାରେ ଭଣ୍ଡସଣ୍ଡ ଶୋଧାଶୋଧି ହେଉଛନ୍ତି, ବାଡ଼ିଆପିଟା ଏସିଡ଼ ଫିଙ୍ଗାଫିଙ୍ଗି ଯାଏ ଗଲାଣି । ଏ ସବୁ ଥାନରେ ଆମକୁ କେବେ ଦେଖିଛ ?

ତେବେ 'ପ୍ରାତରେବାନିଷ୍ଟ' କହୁଛ କିଆଁ ?

ମହାପାତ୍ରେ ହସି ହସି କହିଲେ—"ଆଚ୍ଛା ଆମେ ସେଇଟାକୁ ସଂଶୋଧନ କରି ଦେଉଛୁ—ଅଦ୍ୟ ପ୍ରାତରେବ ଇଷ୍ଟଂ ଦର୍ଶନଂ ଜାତମ୍ ନଜାନେ କତ ବରା, ପକୁଡ଼, ସ୍ୱାହା ଅଣେଇଷ୍ୟସି ।"

ହୋ ହୋ ହୋଇ ହସିଉଠି ଅଧିକାରୀଏ କହିଲେ—"ହଁ… ଏତେବେଳେ ଯାଇ ସଠିକ୍ କଥାଟି ପାଟିରୁ ବାହାରିଲା । ଆରେ ହେ

"ଚାଣ୍ଡୁ ! ତମେ ସବୁ କଅଣ ଏତକ ଜାଣିନ ଯେ ଜଣେ ବନ୍ଧୁ ଘରକୁ ଗଲେ ଖାଲି ହାତରେ ଯାଆନ୍ତି ନାହିଁ । ସେଇଟା ଅଭଦ୍ରାମି ହୁଏ ! ଯାଅ ଯାଅ ବଗ, ପକୁଡ଼, ଗୃଦ୍ଧା ସିଗାରେଟ ନେଇଆସ । ଇଷ୍ଟ ଦର୍ଶନରେ ସୁଫଳ ନ ମିଳିଲେ ସ୍ୱୟଂ ପାଣିନୀଙ୍କ "ଦ୍ୱାସ ରଚିତ ଏହି ଶ୍ଲୋକଟି ଯେ ଅକାମି ହୋଇଯିବ । କେହି ଏହାକୁ ଗୁଣ୍ଡରେ ଧରିବେ ନାହିଁ ।"

ଚାଣ୍ଡୁ ସଙ୍ଗେ ସଙ୍ଗେ ଉଠିଯାଇ ବାଉଁଶିଆଏ ବଗ; ପକୁଡ଼ ନେଇ ଆସିଲା । ସେଗୁଡ଼ାକ ଅନ୍ତର୍ଦ୍ଧାନ ହେବାପରେ ଗୃଦ୍ଧା ଆସିଗଲା । ସେଗୁଡ଼ାକ ସୁଡ଼୍ ସାଡ଼ ହୋଇଯିବା ପରେ ମହାପାତ୍ରେ କହିଲେ—"ପେଟ ଶାନ୍ତ ତ ହେଲା, ଏଥର ମନଶାନ୍ତ କରିବା, ଆଜ ଇଆଡ଼େ କୁଆଡ଼େ ମାଡ଼ ଆସିଥିଲ ?

ଅଧିକାରୀଏ କପାଳରେ କର ଡାଙ୍ଗି କହିଲେ—"ଆଚ୍ଛା, ତୁମେ ତ ପଅରଦିନ ଶ୍ରୀରାମଚନ୍ଦ୍ର ଭବନ ସଭାକୁ ଯାଇ ନ ଥିଲ ?"

"ନାହିଁ, ମୁଁ ଭୁବନେଶ୍ୱରରେ ଅଟକିଗଲି । କାହିଁକି, କଅଣ ହେଲା କି ?"

"ଓହୋ ସେଇ ଜେନା କବି ମୁଖରେ ଯାହା କଳ୍ପନା, ତାହା ଜାହିର ହେବନି, ବାଜ ପକେଇଥିଲା, ବାଜ ମାରିନେଲା ।"

"କଅଣ କଲା ହୋ ?"

"ସେଦିନ ଗଣକବି ବୈଷ୍ଣବ ପାଣିଙ୍କ ଉପରେ ସଭା ହୋଇଥିଲା । କୁଆଡ଼ୁ ସେ ଏତେ ଲୋକ ଅଡ଼େଇ ଆଣିଲା, ତା ଭଗବାନଙ୍କୁ ଜଣା । କିଏ ମନ୍ତ୍ର ଫୁଙ୍କିଦେଲା କେମିତି ଶିକ୍ଷାମନ୍ତ୍ରୀ ବି ମୁଖ୍ୟ ଅତିଥି ବନି ଧାଇଁ-ଆସିଲେ । ଆରେ ବାବୁ ସମସ୍ତଙ୍କୁ ହଲ ଭିତରେ ଖୁନ୍ଦି ସନ୍ଧ୍ୟା ଛଅଟା ଠାରୁ ସାଢ଼େ ଦଶଟାଯାଏ ସମସ୍ତଙ୍କର ନବଦ୍ୱାର ରୁନ୍ଧି ଦେଲା । ସମସ୍ତଙ୍କ ସାଙ୍ଗେ ଶିକ୍ଷାମନ୍ତ୍ରୀଙ୍କର ବି ।

"ଆହେ ନବଦ୍ୱାର ରୁନ୍ଧା କଅଣ ?"

"ଅଃ, ଗୀତା ପଢିନ—ନବଦ୍ୱାରପୁରେ ଦେହୀ ନୈବ, କୁର୍ବନ୍ ନ କାରୟନ୍ । ମଣିଷ ଦେହରେ ନଅଟା ଦ୍ୱାର ଅଛି । ୨ କାନ୍, ୨ ଆଖି ୨ ନାକ, ୧ ପାଟି, ୧ ପ୍ରସାବ ଦ୍ୱାର ଓ ୧ ମଳଦ୍ୱାର । ଏମିତି ନଅଟା ଦ୍ୱାର ହେଲ ?"

"ହେଲ ଯେ, ମୁସର ତାକୁ ରୁନ୍ଧିଲା କେମିତି ?"

ଏମିତି ଭେଳକି ଲଗେଇ ଦେଲା ଯେ ୭ଟା ଠାରୁ ମୂଷାଛୁଆ-ଟାଏ ବି ହଲ ଭିତରୁ ପଦାକୁ ଯାଇପାରିଲା ନାହିଁ । ଖାଇବା, ହଗିଯିବା, ମୂତିବା ବିଲକୁଲ ବନ୍ଦ । ୩ ଦ୍ୱାର ଗଲା ? ମନ ଏତେ ଚିନ୍ତା ଧରିଗଲା ଯେ ସମସ୍ତେ ଡୋଳେଇଲେ, ଦୁଇ ଆଖିକୁ କିଛି ଦିଶିଲା ନାହିଁ, ଦୁଇ କାନକୁ କିଛି ଶୁଭିଲା ନାହିଁ ଓ ଦୁଇ ନାକ ପାଖରେ ସୁଗନ୍ଧ ହେଉଛି କି ଦୁର୍ଗନ୍ଧ ହେଉଛି ବାରିପାରିଲେ ନାହିଁ । ଅର୍ଥାତ୍ ନାକ ଭିତରେ ଗନ୍ଧ ପଶି-ପାରିଲା ନାହିଁ । ଏମିତି ୭ଟା ଦ୍ୱାର ବନ୍ଦ ହୋଇଗଲା । ସର୍ବମୋଟ ୯ଟା ଦ୍ୱାର ରୁନ୍ଧି ହୋଇଗଲା କି ନାହିଁ ।"

"ସାଢ଼େ ଦଶଟା ପରେ ୯ ଦୁଆର ଯାକ ପୁଣି ଖୋଲିଲା କି ନାହିଁ ?

"ହଁ ହେଲ ଯେ ସାଢ଼େ ଦଶଟା ପରେ ବଜାର ସଉଦା କରି ହେଲାନି । ବହୁତଆଡ଼ ବୁଲିବାକୁ ପଡ଼ିଲା । ଘରେ ପହଞ୍ଚୁ ପହଞ୍ଚୁ ବାର । ଘରେ କି କି ଦୁର୍ଦ୍ଦଶା ହେଲା, ଏମାନଙ୍କଠାରୁ ଶୁଣ ।"

ଜଣେ ଲାଜ ଲାଜ ହୋଇ କହିଲା—"ଆମ ଘରେ ଅତି କଡାକଡ଼ି ହୁକୁମ ରାତି ୯ଟା ପରେ ପଦାକୁ ଯାଇ ହବନି କି ପଦାରେ ରହି ହେବନି । ସେଦିନ ରାତି ବାରଟାରେ ଆଉ କି କବାଟ ଫିଟେ । ଓପାସରେ ରାତି ସାରା ପିଣ୍ଡାରେ କଟେଇବାକୁ ହେଲା । ସେ ବି ଓପାସ ଥିଲେ ବୋଲି ପରେ କହିଲେ ।"

ଆଉ ଜଣେ କହିଲା—"ସେ ତ ଦମାଦୋଟ ନିଦରେ ଶୋଇ ପଡ଼ିଥିଲେ । କବାଟ କଳା ହୋଇ ନ ଥିଲା । ତାଙ୍କୁ ଉଠେଇବାକୁ

ସେମିତି ଟିକଏ ହଲେଇ ଦେଇଛି—ଖ-ଖ-ଖ ରଡ଼ି ଗୁଡ଼ି ମୋତେ ରାମ୍ପୁଡ଼ି ବଦାଉ ପକେଇଲେ । କାମିଜଟା ଚିରୁଗ ଚିରୁଗ ହୋଇଗଲା । ମୁହଁଟା ଲହୁ ଲୁହାଣ ହୋଇଗଲା । ତାଙ୍କ ବିକଟ ଚିତ୍କାର ଶୁଣି ପଡ଼ୋଶିଏ ଧାଇଁ ଆସିଲେ । ସମସ୍ତେ ଭାବିଲେ ମୋ ଘରେ ଡକେଇତ ପଶିଛି । ମୁଁ ଭାବିଲି ତାଙ୍କ ଭିତରେ କିଛି ଗୋଟାଏ ଭୂତ କି ପ୍ରେତ ଅଲବତ୍ ସବାର ହୋଇଛି । ପାଞ୍ଚ ମିନିଟ୍‌ର ହିଂସ୍ରତାଣ୍ଡବ ନୃତ୍ୟ ପରେ ସେ ଟିକଏ ଶାନ୍ତ ହେଲେ । ଆଲୁଅ ଲଗିଗଲା । ସେ ମୋତେ ଆଉ ପଡ଼ୋଶୀମାନଙ୍କ ଭିଡ଼ ଦେଖି ଟିକଏ ପ୍ରକୃତିସ୍ଥ ହେଲେ । ପଡ଼ୋଶୀମାନେ ଏହାକୁ ଏକ ଲଘୁକ୍ରିୟା ଭାବି ଘୁଞ୍ଚି ପଳାଇଲେ । ମୋ ମୁହଁକୁ ରକ୍ତାକ୍ତ ଦେଖି ହାଜଲ ଖାଇଗଲେ, ଆଉ ସେବା ଶୁଶ୍ରୂଷା ଆରମ୍ଭ କରିଦେଲେ । ସବା-ଶେଷରେ ମୁଁ ପଚାରିଲି ହଇହୋ ଏମିତି ଖ-ଖ ପାଟିକରି ରାମ୍ପୁଡ଼ି ପକେଇଲ କାହିଁକି ? ଲଜ୍ଜିତ ହୋଇ ସେ କହିଲେ—"ସ୍ୱପ୍ନ ଦେଖିଥିଲି ଆମ ଗାଆଁରେ ଗୋଟାଏ ଆଖୁକିଆରିରେ ପଶି ଆଖୁଟାଏ ଖାଉଛି । ଗୋଟାଏ ଭାଲୁ କେଉଁଠି ଥିଲା ବାହାରି ଆସି ମୋତେ ଆକ୍ରମଣ କଲା । ମୁଁ ଜୀବନ ବିକଳରେ ଭାଲୁ ଭାଲୁ ପାଟି କରି ତାକୁ ରାମ୍ପୁଡ଼ି ପକେଇଲି । ଏମିତି ଘଟିବ ବୋଲି କିଏ ଜାଣିଛି ?"

ଆଉ ଜଣେ କହିଲା—"ମୋର ଘରେ ପହଞ୍ଚୁ ପହଞ୍ଚୁ ରାତି ସାଢ଼େ ବାର ହୋଇଗଲା । ଦେଖିଲିବେଳକୁ ଘରଟା ଠିଆ ମେଲା । ସାଙ୍ଗଟା ଘୁଙ୍ଗୁଡ଼ିରେ ଘର ଫଟାଉଥାଏ । ଆଲୁଅ ଲଗେଇ ଦେଖିଲି ଚୋର ମହା-ପ୍ରଭୁ ବଜେକଣ୍ଟ ଘରେ କଳାକନା ବୁଲେଇ ଦେଇଛନ୍ତି । ସାଙ୍ଗ ମୁହଁରେ ପାଣି ଛିଡ଼ି ଉଠାଇଲି । ସେ ଉଠିସବୁ ଦେଖିଲା, ଶୁଣିଲା । ଶେଷରେ ଅସ-ହାୟ ଭାବରେ କହିଲା—"ମୁଁ କଅଣ କରିବ । ମୁଁ ବହୁତ ରାତିଯାଏ ଚକେଇଲି । ଘର ନିଦ ମାଡ଼ିବାରୁ କବାଟଟା ଆଉଜେଇ ଦେଇ ଶୋଇ ପଡ଼ିଲି । ମୁଁ ଥରେ ଶୋଇପଡ଼ିଲେ ମୋତେ ଡାକଉକା କେହି ଉଠେଇ ପାରିବନି । ସେଇଥିଲାଗି କବାଟଟା କିଳା ନ ଥିଲା । ଶଶୁର ପୁଅ ଚୋରତକ ଏ କଥା ଜାଣିଲେ କେମିତି ? ତୁ ଏତେ ରାତିଯାଏ ପଦାରେ ରହିଲୁ କାହିଁକି ଯେ ? ତୁ କଅଣ ଜାଣିନୁ ଏଇଟା କେଦାରେଶ୍ୱରଙ୍କ ଆସ୍ଥାନ, ସବୁ ମାର୍କାମରା ମଣିଷଗୁଡ଼ାକ ଏଇଠି ରୁହନ୍ତି ।"

"ସେଇଠି କାନମୋଡ଼ ହୋଇ ପ୍ରତିଜ୍ଞା କଲି—କ୍ଷେତ୍ରକର ଡାକଥିବା ସଭାକୁ ଆଉ କସ୍ମିନ୍‌କାଳେ ଯିବ ନାହିଁ ।"

ଅଧିକାରୀଙ୍କ ସଙ୍ଗୀମାନେ ଏମିତିଆ ସଭା ଯୋଗୁ ଘରେ ଭୋଗିଥିବା ଯନ୍ତ୍ରଣା ବର୍ଣ୍ଣନା କଲା ପରେ ସେ ନିଜେ କହିଲେ—"ମୁଁ ଅବଶ୍ୟ ଘରେ ଠିକ୍ ସମୟରେ ପହଞ୍ଚି ଥିବାରୁ ରକ୍ଷା ପାଇଯାଇଛି । ମୁଗୁର ମୋତେ ଦରଓ୍ୱାନ କରି ଠିଆ କରାଇଥିଲା । ଏମିତିଆ ଜୋର ଜବରଦସ୍ତି କାମ ଦେଖି ମୁଁ ସଭା ଅଧାରୁ ପାର ହୋଇଗଲି । ଓଃ; ମୁଗୁର ଏମିତିଆ ଜୋର ଜବରଦସ୍ତିରେ ଖାଲି ବଡ଼ କାମଟାଏ କରିଦେଲା ବୋଲି ଗର୍ବରେ ଫାଟି ପଡ଼ୁଛି । ସଭା ଶେଷରେ କୁଆଡ଼େ ମୋତେ ଖୋଜୁଥିଲା ନିଜର ପାରିଲା-ପଣ ଦେଖେଇ ଦେବାକୁ । ଏଗୁଡ଼ାକ କଅଣ ଗଣତାନ୍ତ୍ରିକ ପନ୍ଥା ? ଏ ସବୁକୁ ପ୍ରଶ୍ରୟ ଦିଆଯିବା ଉଚିତ୍ ନୁହେଁ । ଏହାର ସୁଦୂର ପରିଣତି କଅଣ ଜାଣିଛ ?"

"କଅଣ—"

"ଏମିତି ଦିନ ଆସିବ ସଭା ଗୋଟିଏ ଜେଲ୍‌ଖାନାରେ ପରିଣତ ହୋଇଯିବ । ଯେଉଁମାନେ ସଭା କରିବେ ସେମାନେ ଘରୋଇ ସେନା-ବାହିନୀ ଗଢ଼ି ଲୋକମାନଙ୍କୁ ମେଣ୍ଢା ଅଡ଼େଇଲା ପରି ସଭାକୁ ଅଡ଼େଇ ଆଣିବେ, ଆଉ ହଲ ଭିତରେ ଖୁନ୍ଦିଦେଇ ଦ୍ୱାରପାଖରେ ଲାଠି ବନ୍ଧୁକ ଧରି ଜଗିଯିବେ । ୪ଘଣ୍ଟା ବନ୍ଦୀ ରଖି ସାରିବାପରେ ପୁଣି ଖଲାସ କରି-ଦେବେ । ତା ଫଳରେ ସଭା ନାଆଁ ଶୁଣିଲେ ଲୋକେ ପ୍ରାଣଆରେ ଛୁଡ଼ି ପଳେଇବେ । କିଏ କେଉଁଠି ଯାଇ ଲୁଚିବ ତା'ର ବାଇସ ରହିବ ନାହିଁ । ଇଆଡ଼ୁ ଏ ଜବରଦସ୍ତିର ମୁକାବିଲା ନ କଲେ ପଛକୁ ନେଡ଼-ଗୁଡ଼ କହୁଣିକୁ ବୋହିଯିବ !"

ଶେଷରେ ମହାପାତ୍ରଙ୍କ ମୁହଁ ଖୋଲିଲା—"ଆହେ ଏପରି କଲେ କାର୍ଯ୍ୟ କିପରି ହେବ । କେବଳ ଭିତର ଭିତର ହେଲେ ଚଳିବ ନା ? ସଙ୍ଗେ ସଙ୍ଗେ ତାର ମୁକାବିଲା କରିବା ଉଚିତ୍ । ସବୁଠେଇ ପ୍ରତିରୋଧ ଦରକାର । ଖୋସାମତିଆ ଦଳ ସବୁ ଦେଶଟାକୁ ସାରିଦେଲେଣି ।

ଟାଣିଆ ପ୍ରତିରୋଧ ନ ରହିଲେ, କୌଣସି ବିଷୟର ସୁଷ୍ଠୁ ଉନ୍ନୟନ ହେବନି । ମୁରାରିର ଏପରି ଏକଛତ୍ର ମନୋବୃତ୍ତିକୁ ଦବେଇ ଦିଅ ।”

“ସେଇଥିଲାଗି ତ ଆମେ ତୁମ ସହ ପରାମର୍ଶ କରିବାକୁ ଚାଲି ଆସିଲୁ । ତୁମେ ହେଉଛ ପ୍ରତିରୋଧ ଓ ପ୍ରତିଶୋଧର ବିଶେଷଜ୍ଞ । ହଲପଟା କରିବାରେ ତୁମେ ସିଦ୍ଧହସ୍ତ । ମୁରାରି ଏ ଯେଉଁ ହଲପଟାଟା କରିଦେଲା ତାହାର ପ୍ରତିଶୋଧ କିପରି ନେବା ସେଇ ବାଟଟା ବତେଇ ଦିଅ । ପ୍ରତିଶୋଧ ନ ନେବାଯାଏ ମୁଁ ଅନ୍ନଜଳ ସ୍ପର୍ଶ କରିବି ନାହିଁ ।”

“ଆ ହା ହା, ସେପରି କଲେ କିପରି ହେବ ? ପ୍ରତିମତ ଲଢ଼େଇ ଦରକାର । ଲଢ଼େଇ ପାଇଁ ତାକତ ଦରକାର । ତାକତ୍ ପାଇଁ ଅନ୍ନଜଳ ନିହାତି ଦରକାର । ସ୍ବାକୁ ଛାଡ଼ିଦେଲେ ପ୍ରତିଶୋଧ ନେବ କିପରି ?”

“ହେଉ ହେଲା, ଆମେ ତୁମକୁ ଏ ଲଢ଼େଇରେ ସେନାପତି କଲୁ । ତୁମ ପଛେ ପଛେ ଆମେ ଜଣି ରହିଛୁ । ଏବେ ଯୋଜନାଟା ତିଆରି କର ।”

“ହଉ ହଉ ଗୋଟାଏ ଯୋଜନା କରିବା । ମୁରାରି ସମସ୍ତଙ୍କୁ ସଭା ଗୃହରେ ଅଟକେଇ ରଖିଥିଲା । ଆମେ ଏମିତି ପେଞ୍ଚ କରିବା ଯେ ମୁରାରି ସଭା ହେବାର ଅଧଘଣ୍ଟା ଭିତରେ ଛାଡ଼ି ପଳେଇବ । ଏଇଆ ତ ?

“ସିଧା ସିଧା ଲୁଚି ପଳା ପଳେଇଲେ ମାତବରିଆ ହବନି । ସମସ୍ତେ ବାରଣ କରୁଥିବେ, ବୁଝାଉଥିବେ ଅଥଚ ସେ କିଛି ନମାନି ପଳେଇବ । ପଳାଇବାକୁ ବାଧ ହେବ । ମୋ ମନ ଅରମ ନଟା ମେଣ୍ଢି ପାଆନ୍ତା । ସେ ଯେମିତି ଗୁଡି ଫୁଲେଇ ମୋ ଉପରକୁ ଚଢ଼ଉ କରିବାକୁ ଉହୁଙ୍କି ଆସୁଛି, ମୁଁ ସେମିତି ଗୋଟାକଯାକ ଫୁଲିଯାଇ ତା ଉପରକୁ ଉହୁଙ୍କି ଯାଆନ୍ତି ।”

ରବିନାରାୟଣ ମହାପାତ୍ରେ କିଛି ସମୟ ମୁଣ୍ଡ କୁଣ୍ଡେଇ କୁଣ୍ଡେଇ ପାଟିକରି ଉଠିଲେ—“ପାଇଗଲି, ବାଟ ପାଇଗଲି, ଆଚ୍ଛାକରି ହଲପଟା-ଟାଏ କରିଦେବା ।”

"କଅଣ କୁହନ, କଅଣ କୁହନ" ବୋଲି ସମସ୍ତେ ଏକସଙ୍ଗରେ ଚିଲେଇ ଉଠିଲେ ଏବଂ ପାଟିଗୁଡ଼ାମାନ ମେଲେଇ ମହାପାତ୍ରଙ୍କ ଆଡ଼େ ଚାହିଁ ରହିଲେ ।

ମୁରୁକିହସା ଦେଇ ମହାପାତ୍ରେ କହିଲେ—"ହୁଁ ହୁଁ କଥାଟା ସହଜରେ ମୋ ମୁହଁରୁ ବାହାରିବ ନାହିଁ । ସ୍ପେଶାଲ ଉବଲ ରୁହାରେ ପାଟିଟାକୁ ଉଷୁମ ନ କଲେ କଥାଗୁଡ଼ାକ ପାଟିରେ ଅଟକି ରହିଯିବ ।"

ଅଳପ ଦୂରରେ ବଳପ୍ନ ନଶାଣ ଉଡ଼ୁଥିବାର ଦେଖି ଅଧିକାଂଶ ଆନନ୍ଦରେ କୁଲୁରି ଉଠି ସ୍ପେଶାଲ ରୁହାରେ ମହାପାତ୍ର ଓଗେରଙ୍କ ପାଟି ଉଷୁମେଇ ଦେଲେ । ତା ପରେ ମହାପାତ୍ରେ ପାଟି ପକେଇ ଆରମ୍ଭ କଲେ—"ତମେ ଗୋଟାଏ ସଭା ଡାକ । ନାଚୁଣୀ ଗାଆଣୀ ଝିଅ ତ ତୁମକୁ ଅପ୍ରାପ୍ତ ହେବେନି ! ବଛି ବଛି ଝିଅମାନଙ୍କୁ ସେଦିନ ଆଣ । ତାପସବୋଷକୁ ମଧ୍ୟ ପକଳା ପାକଳ କରି ସଭାକୁ ଅଣେଇବ । ଯଦି ସେ ଭଡ଼ମୋଡ଼ ହୁଏ ତେବେ ଠେକାଏ ତେଲ ତା ଉପରେ ଇଡ଼ିଦେବ । ତାହାହେଲେ ସେ ନିଶ୍ଚୟ ଆସିବ । ଆଜିକାଲି ସେ ଠିକଏ ତେଲ ଖୋଜୁ-ଛନ୍ତି । ଏମାନେ ସଭାରେ ରହିଲେ କେହି ସଭାରୁ ଉଠିବେ ନାହିଁ । ଏପରିକି ତଡ଼ିଲେ ବି କେହି ଯିବେ ନାହିଁ । ଗୋଟିଏ ଗୀତ, ଗୋଟିଏ ନାଚ, ଗୋଟିଏ ତାପସିଆ ବ୍ୟଙ୍ଗ ଅଭିନୟ, ତାପରେ ଗୋଟିଏ ଗ୍ଲେଟକାଟିଆ ବକ୍ତୃତା, ତାପରେ ପୁଣି ଗୋଟିଏ ଗୀତ, ନାଚ, ବ୍ୟଙ୍ଗାଭିନୟ ଓ ବକ୍ତୃତା ଚାଲିବ । ସଭା ଏକାବେଳକେ ସରଗରମ ହୋଇଉଠିବ, ଶ୍ରୋତାମାନେ ଅଠା ବଉଳା ଉପରେ ଲାଗି ରହିଗଲା ପରି ବସି ରହିବେ । ସେଦିନ ତୁମକୁ ଗୋଟାଏ ଗୁପ୍ତ କାମ କରିବାକୁ ହେବ । ଆଗରୁ ଯୋଗାଡ଼ କରି ସେହିଦିନ ଦିନ ୯ଟାରୁ ୧୦ଟା ଭିତରେ ଯୋଡ଼ାଏ ରସଗୋଲା ଭିତରେ ଦୁଇଟା ଡଲ୍‌କୋଲାକ୍‌ସ୍ ବଟିକା ଯୋଡି ଦେଇ ମୁରାରିକୁ ଖୁଆଇ ଦେବ । ତା ପୂର୍ବରୁ ଯଦି କାଚ୍ଚା ଗନ୍ଧିଆ ତେଲରେ ଛଣା ବରା ପକୁଡ଼ି ଖୁଆଇ ଦିଅନ୍ତ ତେବେ ତ ଆହୁରି ଉତ୍ତମ । ତୁମେ ଏତିକି କର, ବାକି-ତକ କାମ ମୁଁ ସେଇ ସଭାରେ କରିଦେବ । ସେ ସଭାରେ ମୁରାରି ହେବ ସଭାପତି, ଜଣେ ସ୍ଥାନୀୟ ଲୋକଙ୍କୁ ମୁଖ୍ୟ ଅତିଥି କରିଦେବ । ମୁଁ ଆବାହକ ହେବି, ତାପରେ ମଜାଟା ଦେଖିବ ।"

ରବିବାର ଦିନ ଖୁବ୍ ଜାକଜମକରେ ଶ୍ରୀରାମଚନ୍ଦ୍ର ଭବନରେ 'ଯଦୁମଣି' ବାର୍ଷିକୀ ସଭା ଆରମ୍ଭ ହେଲା । ମହାପାତ୍ରଙ୍କ ଯୋଜନା ଅନୁଯାୟୀ ସବୁକାମ କଣ୍ଟାଏ କଣ୍ଟାଏ ଅଧିକାରି ଏ କରି ଦେଇଥାନ୍ତି । ସାଢ଼େ ଛଅଟା ବେଳକୁ ସଭା ଏକାବେଳକେ ଉଚ୍ଛୁଳି ପଡ଼ିଲା । ସମସ୍ତେ ନିଜ ନିଜ ଆସନରେ ବସିଗଲେ । ଆବାହକ ମହାପାତ୍ରେ ସଭା ଆରମ୍ଭ କରେଇ କହିଲେ—"ଆଜି ଓଡ଼ିଆ ସାହିତ୍ୟର ହାସ୍ୟରସ ସମ୍ରାଟ ଯଦୁମଣିଙ୍କ ସ୍ମୃତି ପୂଜାପାଇଁ ଆପଣମାନେ ବିପୁଳ ସଂଖ୍ୟାରେ ଯୋଗ ଦେଇଥିବାରୁ ମୁଁ ଉଦ୍ୟୋକ୍ତାମାନଙ୍କ ତରଫରୁ ଆପଣମାନଙ୍କୁ ଧନ୍ୟବାଦ ଦେଉଛି । ଅନେକ ସମୟରେ ଦେଖାଯାଏ ସଭା ନ ସରୁଣୁ ଅଧିକାଂଶ ଶ୍ରୋତା ସଭା ତ୍ୟାଗ କରି ପଳାନ୍ତି । ଏହା ପ୍ରକାରାନ୍ତରେ ସେମାନଙ୍କର, ଯାହାଙ୍କ ସ୍ମୃତି-ପୂଜା ଉଦ୍ଦେଶ୍ୟରେ ସଭା ହେଉଥାଏ ତାଙ୍କ ପ୍ରତି ଏକ ଅପମାନଜନକ ବ୍ୟବହାର, ଏକ ଚାପଲ୍ୟ ଛଡ଼ା ଆଉ କିଛି ନୁହେଁ । ଯଦି ଉଦ୍ଦିଷ୍ଟ ବ୍ୟକ୍ତିଙ୍କ ପ୍ରତି ଶ୍ରଦ୍ଧା ନ ଥାଏ ତେବେ ସଭାକୁ ବରଂ ନ ଆସିବା ଉଚିତ । କିନ୍ତୁ ଆସି ପଳେଇବା ଅସଂସ୍କୃତ ଲୋକର କାମ । ଏହା ଏକ ଗର୍ହିତ ଓ ଅଭଦ୍ରୋଚିତ କାର୍ଯ୍ୟ । କୌଣସି ଶିକ୍ଷିତ ଓ ସଂସ୍କୃତିସମ୍ପନ୍ନ ଲୋକ ଏପରି କାର୍ଯ୍ୟ କରେ ନାହିଁ । ଆଜିର ଏ ସଭାର ସଭାପତି ଜେନାକବି ଶ୍ରୀ ମୁରାରି ମୋହନ ଜେନାଙ୍କୁ ଆପଣମାନେ ଭଲଭାବରେ ଜାଣନ୍ତି । ସେ ଜଣେ ଅତି ଦକ୍ଷ ସଙ୍ଗଠକ, ସଭା ପରିଚାଳନାରେ ସେ ବିଚକ୍ଷଣତା ଦେଖାଇ ଥାଆନ୍ତି । ସଭାରେ ସେ ନିଜେ ଯେପରି ଆରମ୍ଭରୁ ଶେଷ ପର୍ଯ୍ୟନ୍ତ ଅବିଚଳିତ ଭାବରେ ଉପସ୍ଥିତ ରହନ୍ତି ଅନ୍ୟମାନଙ୍କ ଉପରେ ସେହିପରି ଅଖଣ୍ଡ ପ୍ରଭାବ ପକାଇ ସେମାନଙ୍କୁ ରଖାନ୍ତି । ସେ ଜଣେ ଏପରି ନିଷ୍ଠାପର ଓ ମିତବାଦୀ ବ୍ୟକ୍ତି ଯେ ସଭାରେ ଥରେ ପଦାର୍ପଣ କଲେ ଦୁନିଆ ପ୍ରଳୟ ହୋଇଗଲେ ବି ସଭା ଶେଷ ପର୍ଯ୍ୟନ୍ତ ସେ ନିଜ ଆସନରୁ ଉଠନ୍ତି ନାହିଁ । ବେଳେବେଳେ ଦେଖାଯାଏ ଯେ କୌଣସି କୌଣସି ସଭାପତି ପେଟ ମୋଡ଼ି ହେଉଛି, ଝାଡ଼ା ଦେଖାଇଲାଣି ଆଦି ମିଥ୍ୟା କାରଣ ଦେଖାଇ ସଭାମଝିରୁ ଉଠି ପଳାନ୍ତି, କିନ୍ତୁ ଆଜିର ସଭାପତି ନୈଷ୍ଠିକ ମିତବାଦୀ ମୁରାରିବାବୁ ଏ ସବୁର ବହୁତ ଉପରେ । ଦାରୁଣ ପେଟବ୍ୟଥା, ଘୋର ଅସୁସ୍ଥତା ଭିତରେ ବି ସେ କେବେହେଲେ ସଭାସ୍ଥଳ ଅସମୟରେ ତ୍ୟାଗକରି ନାହାନ୍ତି । ମିଛଟାରେ ଝାଡ଼ା ଦେଖାଉଛି ବୋଲି କହିବା ଦୂରର କଥା, ଏପରି

କହିବାକୁ ସେ ଘୃଣାବୋଧ କରନ୍ତି । ତାଙ୍କପରି ସଭାପତି ପାଇ ଆମେ ଗର୍ବ ଅନୁଭବ କରୁଛୁ । ଆପଣମାନେ ଯେ ତାଙ୍କ ଆଦର୍ଶରେ ଅନୁପ୍ରାଣିତ ହୋଇ ସଭାରେ ଶେଷ ପର୍ଯ୍ୟନ୍ତ ଉପସ୍ଥିତ ରହିବେ ତାହା କହିବା ଅନାବଶ୍ୟକ ମନେକରୁଛି । ବର୍ତ୍ତମାନ ମାନ୍ୟବର ସଭାପତିଙ୍କୁ ସଭା କାର୍ଯ୍ୟ ପରିଚାଳନା କରିବା ପାଇଁ ଅନୁରୋଧ କରୁଛି ।”

ସଭାକାର୍ଯ୍ୟ ବେଶ୍ ଉତ୍ସାହ ଉଦ୍ଦୀପନାର ମଧ୍ୟ ଆଗେଇଲା । ସନ୍ଧ୍ୟା ସାଢେସାତଟା ବେଳକୁ ଜେନାବାବୁଙ୍କ ମୁହଁରୁ ପ୍ରସନ୍ନତା ଲିଭିଗଲା । କ୍ରମେ ତାହା ବିକୃତିରେ ପରିଣତ ହେଲା । ସେ ମନେମନେ ଭାବୁ ଥାଆନ୍ତି ଏମିତି ତ କେବେ ହୁଏ ନାହିଁ । ଆଜି କି ଦୁର୍ଭାଗ୍ୟ, ଏପରି ଅଡୁଆ ଚଳିବ ଦେଖାଦେଉଛି କାହିଁକି ? ମୁଁ ତ ଦଶଟଣ୍ଡା ବରା, ପିଆଜ ଭଜା, କରିଦେବା ଲୋକ । ଦୁଇଟି ବରା ଦୁଇଟି ପିଆଜି ଅଧିକା ଦେଇଥିଲି । ସେଥିରେ ଏପରି ହେବା ଅସମ୍ଭବ । ଓଃ ଆଉ ତ ବସି ହେବନି । ମହାପାତ୍ରଟା ତ ସବୁବାଟ ବନ୍ଦ କରିଦେଲା । କାହାକୁ କଅଣ କହିବ । ଯାଉଛି ଦେଖାଉଛି କହିବାମାତ୍ରେ ତ ସମସ୍ତେ ହସିବେ, ଉପହାସ କରିବେ । ତାହା ମରଣରୁ ବଳିପଡ଼ିବ । ଏଣେ ଆଉ ଟିକକରେ ପେଣ୍ଟ ଖରାପ ହେବ । ତାହା ବି ମରଣରୁ ବଳିଯିବ । ହେ ପ୍ରଭୁ ଗଜକୁ ଉଦ୍ଧାର କରିଛ, ମୃଗୁଣିକୁ ବଞ୍ଚାଇଛ, ଦ୍ରୌପଦୀର ଲଜ୍ଜା ନିବାରଣ କରିଛ । ଆଜି ମୋତେ ବଞ୍ଚାଅ ନା-ନା-ଆଉ ପାରିବ ନାହିଁ । ‘ଅଧଃବମନ’ ଦେଖାଉଛି କହି ସଭା ଛାଡ଼ି, ହରୁଡ଼ କାମୁଡ଼ା ପଳାତକ ପରି ପଳେଇଲେ । ପଳେଇଲାବେଳେ କେତେଜଣ ଶ୍ରୋତା କହୁଥିବାର ସେ ଶୁଣିଲେ—‘ଏଇ ଆଉ କୋଉ ମୁଗରି ବାବୁ, ଜେନାଭାଇ ମୁଗରିବାବୁ ନୁହନ୍ତି ।’ ଅଧିକାଂଶ ଓ ମହାପାତ୍ରେ ପରସ୍ପରକୁ ଚାହିଁ ମୁରୁକି ହସା ହେଲେ ।



# ସମ୍ମିଳନୀ ସଫଲେର

ସେଦିନ କାଳିଦାସ ନଗରର ରାଜା କବିମାନେ ଶ୍ରୀହର୍ଷ ହଲରେ ଅଚାନକ ଏକଜୁଟ ହୋଇଗଲେ । ବନ୍ୟଜନ୍ତୁ ସଂରକ୍ଷଣ ବିଷୟରେ ଏକ ସଭା ଦିନ ଚାରିଟାରେ ହେବାର ଥିଲା । ବଣୁଆ ଅଫିସର ଆଠ ଦଶଜଣ ଆସି ବସିଲେ । ବଣୁଆ ମନ୍ତ୍ରୀ ୪ଟା ବେଳେ ଆସି ପହଞ୍ଚିବାର ଥିଲା । ସେ କୁଆଡ଼େ କର୍ମୀ, ସହକର୍ମୀ କେତେଜଣଙ୍କ ସହ ଗୋଟାଏ ବଣଭୋଜିକୁ ଚାଲିଗଲେ । ବଣକୁ ବାହାରିଲା ବେଳକୁ ସେକ୍ରେଟେରି ଚେତେଇ ଦେଇ-ଥିଲେ ଯେ ଦିନ ୪ଟାରେ ଗୋଟାଏ ମିଟିଂ ଅଛି । ବଣୁଆ ସେକ୍ରେଟେରିଙ୍କୁ ସଭା ପରିଚାଳନା କାମଟା ଚଳେଇ ନେବାକୁ ଆଦେଶ ଦେଇ ସେ ଚାଲି-ଗଲେ । ୪ଟା ବେଳେ ଶ୍ରୀହର୍ଷ ହଲରେ ଏହି ଖବରଟା ପହଞ୍ଚି ଯିବାରୁ ବଣୁଆ ଅଫିସରମାନେ ଖୁସି ହୋଇଗଲେ । ଇଚ୍ଛାଟାରେ କିଏ ରାତି ନଅଟାଯାଏ ବକର ବକର ହୋଇଥାନ୍ତା । ମନ୍ତ୍ରୀଙ୍କୁ ସବୁବେଳେ ହଁ ସାର୍, ଆଜ୍ଞା ସାର୍, ୟେସ ସାର୍ କହି କହି ପାଟିରୁ ବଚ କାଢ଼ିଥାଆନ୍ତା । ମଣିଷ ବଞ୍ଚିଲା, କିନ୍ତୁ ମନ୍ତ୍ରୀ ଯେତେବେଳେ ତାଙ୍କ ଅନୁପସ୍ଥିତିରେ ସଭାଟା କରିଦେବାକୁ ଆଦେଶ ଦେଇଛନ୍ତି ସେତେବେଳେ ଅନ୍ତତଃ ଦଶ ପନ୍ଦର ମିନିଟ ପାଇଁ ସଭାଟା କରିଦେବା ନିହାତି ଦରକାର । ବାସ୍, ସେକ୍ରେଟେରି ସଭାପତି ବନିଗଲେ । ବଣୁଆ ଅଫିସରମାନଙ୍କ ଭିତରୁ ଅଧେ ବକ୍ତା ଓ ଅଧେ ଶ୍ରୋତା ହୋଇ ସଭାକାମ ଅଧଘଣ୍ଟା ଭିତରେ ସାରିଦେଇ ଏବଂ ଧନ୍ୟବାଦ ଦେଇ ହଲରୁ ବାହାରିଗଲେ । ସେମାନଙ୍କର ପ୍ରସ୍ଥାନ ପରେ ପରେ ରାଜା କବିମାନେ ହଲ୍ ଖୋଲାଥିବା ଦେଖି ପଶିଗଲେ—ଠିକ୍ ଯେମିତି ମୂଷା ଗାତକରି ପଳେଇଲେ ସେଠି ସାପ ଯାଇ ଆରାମରେ ରହେ ।

ରାଜା କବିମାନେ ଯେତେବେଳେ ଶୁଣିଲେ ଯେ ହବାକୁ ଥିବା ସଭାଟା ଗାଭୁର ପକେଇଛି, ସେତେବେଳେ ସେମାନେ ଖୁବ୍ ଖୁସି ହୋଇ-

ଯାଇ ସେମାନଙ୍କର ଗୋଟିଏ ସମ୍ବର୍ଦ୍ଧନା ଦେବାକୁ ବସିପଡ଼ିଲେ । ଜଣେ କୃଷ୍ଣ ତୁଷ୍ଟି ମନରେ ଗୋଟିଏ କବିତା ବଳ୍‌ବଳେଇ ଉଠିଲେ । ଏକାଠି ଯାଉଥିବା ଦଳେ ଲୋକଙ୍କ ଭିତରୁ ଜଣେ ଗସ୍ତାକଣ୍ଠରେ ପରସ୍ତା କରି ବସିଲେ ଅନ୍ୟମାନଙ୍କୁ ଯେପରି ପରସ୍ତା ତଳ୍ଟବ ଦେଖାଏ, ଠିକ୍ ସେହିପରି ଜଣେ କବିଙ୍କୁ କବିତା ବଳବଳେଇବାର ଶୁଣି ଅନ୍ୟ କବିମାନଙ୍କୁ ପ୍ରବଳ କବିତା ତଳବ ଦେଖାଇଲା । ଗୋଟାଏ ବଲୁଆର ବୋବାଳି ସଙ୍ଗେ ଅନ୍ୟ ବଲୁଆମାନେ ବୋବାଳି ମିଶେଇଲା ପରି ଅନ୍ୟ କବିମାନେ କବିତା ବୋବାଳି ଛାଡ଼ିଲେ । କିଏ ଭଞ୍ଜଙ୍କ ପେଁକାଳି ବଜେଇଲା ତ କିଏ ବଜେଇଲା ଗଡ଼ନାୟକଙ୍କର, କିଏ ବା ସଚ୍ଚିଦାନନ୍ଦଙ୍କର । ଅଧିକାଂଶ ଅଲଟ୍ରା ମଡର୍ଣ୍ଣ ପେଁକାଳିରେ ହଲ୍ କମ୍ପେଇଲେ । ମୋଟ ଉପରେ ଗୋଟାଏ ହାଟୁଆ କବି ସମ୍ମିଳନୀ ବସିଗଲା । କିଗସିନୀ ସରିଗଲେ ଲଣ୍ଠନଟାଏ ଯେପରି ଆସ୍ତେ ଆସ୍ତେ କମିଆସେ କବିମାନଙ୍କର ଉଦ୍ଦୀପନା ସରିଯିବାରୁ ଗୋଳ ଆସ୍ତେ ଆସ୍ତେ କମିଆସିଲା ।

ସବୁ ଚୁପ ପଡ଼ିଯିବା ପରେ ଜଣେ କବି କହିଲେ—"ହେ ଶୁଣ ଆମର ଗୋଟାଏ ବଡ଼ ଧରଣର କବି ସମ୍ମିଳନୀ କରିବା । ଓଡ଼ିଶାର ଖୁରାଆଡ଼ୁ କବିମାନଙ୍କୁ ନିମନ୍ତ୍ରଣ କରିବା ।"

ଆଉ ଜଣେ କହିଲା—"ବଢ଼ିଆ ପ୍ରସ୍ତାବଟାଏ । ଆଜିକାଲି ସମସ୍ତେ ସଙ୍ଘବଦ୍ଧ ହୋଇ ସଭା ସମିତି କରୁଛନ୍ତି । ଖାଇପିଇ ନାଚକୁଦ ଅଭ୍ୟାସ କରୁଛନ୍ତି । ମୋଚିଠାରୁ ଆରମ୍ଭ କରି ମାଷ୍ଟରଙ୍କ ଯାଏ ସମସ୍ତେ ସଭା ସମିତି କଲେ, ନାଚ ଗୀତରେ ଖୁରାଆଡ଼ କମ୍ପେଇଲେ, ଖାଇପିଇ ଖୁରାଆଡ଼େ ଅଇଁଠାପତ୍ର ଗଦେଇଲେ । ଆମେ କବିକୁଳ କିଛି କରିପାରୁନୁ । ବାହାର ଲୋକେ ଓଲଟି ଆମକୁ ନେଇ ହୋ ହୋ କରନ୍ତି, ବାହାବା ମାରି ନଥନ୍ତି । ଆମେ କିନ୍ତୁ ଯେଉଁ ତିମିରେ ସେଇ ତିମିରେ ।"

ଆଉ ଜଣେ କହିଲେ "ନା, ଆମେ ଅଲବତ୍ ସମ୍ମିଳନୀଟାଏ କରିବା, ଅନ୍ୟମାନଙ୍କଠାରୁ ଆହୁରି ବଢ଼ିଆ କରି କରିବା । ନହୁଛା

କବି ସମ୍ମିଳନୀଟାଏ କଲେ ଟଙ୍କା ଅଭାବ ପଡ଼ିବନି । ଟଙ୍କା କୁଆଡୁ କୁଆଡୁ ଆସି ଗଦେଇ ହୋଇଯିବ ।”

ଜଣେ ଥଟ୍ଟାକାର କହିଲା—“ଆରେ, ଆମେ ସମସ୍ତେ ତ ଶୁଖା ଖଡ଼ଖଡ଼ । ତେଣୁଁକି ଏମିତିଆ ବଡ଼ ବଡ଼ କଥା କହି କି ଲାଭ ? ଟଙ୍କା କଉଣ ମେଘ ଭିତରେ ରହିଛି ? ଆମେ କବିମାନେ ଗୋଟାଏ ଗ୍ୟାସ୍ ଭିତରକୁ, ଛାଡ଼ିଦେବୁ ଆଉ ଟଙ୍କାଗୁଡ଼ାକର ବର୍ଷା ହୋଇଯିବ । ଆମେ ସେଗୁଡ଼ାକ ହାତଆ ଗୋଟେଇ ପକେଇ ଓଳିଆ ବାନ୍ଧି ଘରେ ଥୋଇ ଦେବା ।”

ଅନ୍ୟ ବକ୍ତା କହିଲେ—“ଆହା, ତୁମେ କଥାଟାକୁ ଧରିପାରିଲ ନି । ସରକାରଙ୍କ ପକେଟରେ ପ୍ରଚୁର ଟଙ୍କା ଅଛି । ଅସଲ କଥା ହେଉଛି ତାଙ୍କ ପକେଟରେ କେମିତି ହାତ ପୂରେଇବା, ସେଇ ହେଲା ପ୍ରଶ୍ନ ।”

“ହଁ, ଖୁବ୍ ଭଲ କଥାଟାଏ କହିଲ ଏକା । ‘ପିକ୍‌ପକେଟ କବି’ର ସାର୍ଟିଫିକେଟ୍ ଧରେଇ ଦେଇ ପୁଲିସ ସିଧାସଳଖ ମାମୁଁ ଘରକୁ ପଠେଇ-ଦେବ । ବଢ଼ିଆ ବାଟଟାଏ ଦେଖେଇ ଦେଲ !”

“ଧେତ୍‌ତେରିକା, ଖମ୍ଭଆଳୁଟା ବୁଝିଲ । ମୋ କହିବାର ଅର୍ଥ ହେଲା ମଂତ୍ରୀମାନଙ୍କ ମାରଫତ୍‌ରେ ବହୁତ ଅର୍ଥ ଅଛି । ସେମାନଙ୍କୁ କୌଣସିମତେ ଖୁସ୍ କରିପାରିଲେ ସେମାନଙ୍କଠାରୁ ଯଥେଷ୍ଟ ଟଙ୍କା ମିଳିବ । ମଂତ୍ରୀମାନେ କବିମାନଙ୍କୁ ଭଲ ପାଆନ୍ତି, କାରଣ କବିମାନେ ସେମାନଙ୍କୁ ଖୁବ୍ କମ୍ ଗାଳି ଦିଅନ୍ତି । ମଂତ୍ରୀମାନେ ମଧ୍ୟ ବେଳେବେଳେ କବି ହେବାକୁ ଚେଷ୍ଟା କରନ୍ତି । କବିମାନଙ୍କ ଧାସ ଲାଗିଲେ ସହଜରେ କବି ବନିଯାଇ ପାରିବେ । ଏଇଥିଲାଗି କବିମାନଙ୍କ ସାନ୍ନିଧ୍ୟକୁ ସେମାନେ ବେଶି ପସନ୍ଦ କରନ୍ତି । ମଂତ୍ରୀଙ୍କ ପୃଷ୍ଠପୋଷକତାରେ ଯଦି ଆମେ ସମ୍ମିଳନୀ-ଟାଏ ଆରମ୍ଭ କରିଦେବା ତେବେ ମଂତ୍ରୀ ପକେଟଟାକୁ ଦେଖେଇ ଦେଇ କହିବେ—ନେ କେତେ ଟଙ୍କା ନେଉଛୁ ନେ । ସୁତରାଂ ଟଙ୍କାଟା ବଡ଼ କଥା ନୁହେଁ । ବଡ଼ କଥାହେଲା ସମ୍ମିଳନୀର ଅୟୋଜନ । ଠିକଠିକ ସମ୍ମିଳନୀରେ କାମ ଚଳିବ ନାହିଁ । କଟକ ସମ୍ମିଳନୀ କି ଭୁବନେଶ୍ୱରର

ଅନାବନା ଗୋଷ୍ଠୀର ସମ୍ମିଳନୀକୁ ମଂତ୍ରୀ ପସନ୍ଦ କରିବେନି । ସେ କଣ କଟକ ବା ଭୁବନେଶ୍ୱରର ମଂତ୍ରୀ ? ସେ ସାରା ଓଡ଼ିଶା ପାଇଁ ମଂତ୍ରୀ । ନିଖିଳ ଓଡ଼ିଶା କବି ସମ୍ମିଳନୀ କଲେ ସେ ଖୁସି ହେବେ ଓ ଥଳି ଖୋଲିବେ ।"

ଶେଷରେ ନିଖିଳ ଓଡ଼ିଶା କବି ସମ୍ମିଳନୀଟାଏ ଯେକୌଣସିମତେ କରିବାକୁ ସମସ୍ତେ ରାଜି ହୋଇଗଲେ । ସଙ୍ଗେ ସଙ୍ଗେ ସଭାପତି, କାର୍ଯ୍ୟକାରୀ ସଭାପତି, ସାଧାରଣ ସମ୍ପାଦକ, ଯୋଗାଯୋଗ ସମ୍ପାଦକ, କବିତାବଛା ସମ୍ପାଦକ, ପ୍ରଚାର ସମ୍ପାଦକ, ମଂତ୍ରୀ ଅନୁଧାବନ ସମ୍ପାଦକ [ମଂତ୍ରୀଙ୍କ ପଛେ ପଛେ ମାସେଖଣ୍ଡେ ନ ଗୋଡ଼ାଇଲେ ସେ ଧରାବନ୍ଧା ଅନ୍ତି ନାହିଁ । ତେଣୁ କେବଳ ତାଙ୍କର ପାଇଁ ଜଣେ ସେକ୍ରେଟେରୀ ଦରକାର], କବିତାପାଠ ନିୟଂତ୍ରଣ ସମ୍ପାଦକ, କୋଷାଧ୍ୟକ୍ଷ ଓ ସର୍ବୋପରି ସଭା ସଫଳକାରୀ ସମ୍ପାଦକ ବା ଶେଷ ସମ୍ପାଦକ । ଏମାନଙ୍କ ଛଡ଼ା ଖିଆପିଆ ସହସମ୍ପାଦକ ଶ୍ରୋତା ଯୋଗାଡ଼ ସହସମ୍ପାଦକ, କଳି ନିବାରଣ ସହସମ୍ପାଦକ, ଫଟୋ ଗ୍ରହଣ ସହ ସମ୍ପାଦକମାନେ ମଧ୍ୟ ନିଯୁକ୍ତିପତ୍ର ପାଇଗଲେ । ଶେଷକୁ ଚାରିଜଣ ରିଜର୍ଭ ସହସମ୍ପାଦକ ମଧ୍ୟ ରହିଲେ । ଜଣେ କେହି ଯଦି ଦୁର୍ଘଟଣାଗ୍ରସ୍ତ ବା ଅସୁସ୍ଥ ହୋଇପଡ଼ିବ ତେବେ ଏହିମାନଙ୍କ ଭିତରୁ ଜଣେ ତାହାର ସ୍ଥାନ ପୂରଣ କରିବ ।

ସବୁ ଠିକ୍ ଠାକ ହୋଇଗଲା । କର୍ମକୁଶଳତାରେ ଅନୁଧାବନ ସମ୍ପାଦକ ସର୍ବଶ୍ରେଷ୍ଠ ଦକ୍ଷତା ଦେଖାଇଲେ । ମାତ୍ର ପନ୍ଦର ଦିନରେ ସେ ମୁଖ୍ୟମଂତ୍ରୀ, ଶିକ୍ଷାମଂତ୍ରୀ ଓ ସାଂସ୍କୃତିକ ମଂତ୍ରୀଙ୍କୁ ରାଜି କରାଇ ରେକର୍ଡ ଭାଙ୍ଗିଦେଲେ । ପୂର୍ବ ରେକର୍ଡ ଥିଲା ଅଠରଦିନ । ସରକାର କବିମାନଙ୍କ ଦୁଇଦିନ ପାଇଁ ଆଶ୍ରୟସ୍ଥଳ ଖିଆପିଆ ଓ ସଭାଗୃହର ଭାର ନେବେ ବୋଲି ମୁଖ୍ୟମଂତ୍ରୀ ସ୍ଥିର କରିଦେବାରୁ ସମ୍ପାଦକ ଓ ସହସମ୍ପାଦକମାନେ ତାଙ୍କ ନାଆଁରେ ଲିଙ୍ଗରାଜଙ୍କ ଉପରେ ବେଲପତ୍ର ଚଢ଼େଇବାକୁ ଜଣେ ପଣ୍ଡାଙ୍କୁ ଅର୍ଡର ଦେଇଦେଲେ ।

ଏହି ଯେଉଁ ଅସଲ ବଡ଼ କାମଟିକ ହୋଇଗଲା, ତାର ଧକ୍କାରେ ଆଉ ସବୁ କାମ ଢିଡ଼ ଢିଡ଼ ହୋଇ ଆଗକୁ ଦଉଡ଼ିଲା କହିଲେ ଚଳେ ।

ଅନୁଧାବନ ସମ୍ପାଦକ ଅଲିଂପିକ୍‌ରେ ସ୍ୱର୍ଣ୍ଣପଦକ ପାଇଲା ପରି ଗୁଡ଼ ଫୁଲେଇ ବୁଲିଲେ । ସଶଙ୍କ ହୋଇ ରହିଲେ କେବଳ ଦୁଇଜଣ ସମ୍ପାଦକ । ସେମାନେ ହେଲେ କବିତାପାଠ ନିୟନ୍ତ୍ରଣ ସମ୍ପାଦକ ଓ ସଭାସଫଳକାରୀ ସମ୍ପାଦକ । ନିୟନ୍ତ୍ରକ ସମ୍ପାଦକ କହିଲେ –"ମୋର ମୁଣ୍ଡରେ ପେଣ୍ଡ ବସିଲା ଜାଣ । ତାଳଚେରରେ ସାର କାରଖାନା ବସିବା ଫଳରେ ଓଡ଼ିଶାରେ କବି ଉତ୍ପାଦନ ଏତେ ବେଶି ହୋଇଗଲାଣି ଯେ ତିନି ଚାରି ହଜାର ପତ୍ରିକା ବାହାର କଲେ ବି ସେମାନଙ୍କୁ ଥଇଥାନ କରିହେବନି । ସେମାନଙ୍କ ପାଖରୁ ଯେଉଁ କବିତା ସବୁ ଆସିବ ସେଥିରେ ଗୋଟିଏ ଗାଡ଼ିଆ ପୋତି ହୋଇପଡ଼ିବ । କବିତା ଖୁବ୍ ହେଲେ ୧ଘଣ୍ଟାରେ ଚାଳିଶଟି ପଢ଼ା ହୋଇପାରିବ । କାହାକୁ ବାଛିବ ? ୪୦ଜଣଙ୍କୁ ମାତ୍ର ବନ୍ଧୁ କରିବ ଓ ଦୁଷମନ କରିବ ଦୁଇ କି ତିନି ହଜାର । ସମସ୍ତେ ମତେ ଖାଇଯିବେ, କେଳେଇ ପକେଇବେ । ହେ ଭଗବାନ, ମୋତେ ରକ୍ଷାକର ।"

ସଭା ସଫଳକାରୀ ସମ୍ପାଦକ ମଧ୍ୟ ଜଗାଳରେ କରି ତାଡ଼ି କହିଲେ, "ସେଥିରେ ତୁମର ବିବ୍ରତ ହେବା ଦରକାର ନାହିଁ । ୪୦ଟି କବିତା ଉପରେ ଥୋଇଦେବ । ଘଣ୍ଟାଏ ପରେ ଖିଆପିଆ ଲାଗି ସଭା ବନ୍ଦ ହେଲା ବୋଲି ଘୋଷଣା କରିଦେବ । ସମସ୍ତେ ଉଠି ପଳେଇବେ । ପଢ଼ା ନ ହୋଇଥିବା କବିତାର କବିମାନେ ମଧ୍ୟ ମନେ ମନେ ଭିଡ଼ ଜମେଇଥିବା ଅନ୍ୟ କବିମାନଙ୍କୁ ଗାଳିଗୁଲଜ କରି ପଳେଇବେ । ସେତେବେଳକୁ ସେମାନଙ୍କର ପେଟ ମଧ୍ୟ ଭୋକରେ କଅଁ କଅଁ ଡାକୁଥିବ । ଭୋକ ହେଲେ କବିତା ଫବିତା ପଚାରେ କିଏ ? ସବୁଯାକ କବି ନିଜ ଛଡ଼ା ଅନ୍ୟ ସମସ୍ତଙ୍କୁ ତେଲୁଣୀପୋକ ସନ୍ତାନ କହି ସେମାନଙ୍କ ଉଦ୍ଦେଶ୍ୟରେ ଅଶ୍ଳୀଳ, ଅବୈଧାନିକ ଓ ଅରୁଚିକର ବାକ୍ୟ ସବୁ ପ୍ରୟୋଗ କରିବେ । ତୁମର କିଛି ହେବ ନାହିଁ । ତୁମେ ତାଙ୍କ କବିତା ବାଦ ଦେଇଛ କି ରଖିଛ ସେ କଥା ବାଏଁ ବାଏଁ ଉଡ଼ିଯିବ ।

ସମସ୍ୟା ହେଉଛି ମୋର । ତା' ଭିତରେ ଅଧିକାଂଶ କବିତା ଥିବ ଆଧୁନିକ—ଦୁର୍ବୋଧ୍ୟ । ଆଜିକାଲି ତ ସେଗୁଡ଼ାକୁ କେହି ପସନ୍ଦ କରୁ ନାହାନ୍ତି । କବିତାପାଠବେଳେ ଯଦି କେହି ଏ କବିତାକୁ ଶବ୍ଦ ମନୋଭାବାପନ୍ନ

ଶ୍ରୋତା ଦୂର୍ ଦୂର୍ କରନ୍ତି ଏ ତେବେ ତ ପାଠୋଦ୍ଧାର ଭଣ୍ଡୁର ହୋଇଯିବ ।
ମୋ ପଦଟି ଯେ କେବଳ ଏହି ନିଷ୍ଫଳକାମ ସମ୍ପାଦକ ହେବ ତାହା
ନୁହେଁ, ସବୁ ଦୋଷତକ ମୋର ମୁଣ୍ଡରେ ଲଦା ହେବ । କବିମାନେ ମୋ
ବେକରେ ଦାଉ ଲଗେଇ ଦେବେ ।'

ଏହିସବୁ କାରଣ ଯୋଗୁ ସେ ନିଜ ପଦବୀରୁ ଇସ୍ତଫା ଦେବାକୁ
ଖୋଜିଲାରୁ ଏକ ନମ୍ବର ରିଜର୍ଭ ସମ୍ପାଦକ ତାଙ୍କୁ ପ୍ରବୋଧ ଦେଇ କହିଲେ
"ମାଭୈଃ । ମୁଁ ସମ୍ଭାଳି ନେବି । ତୁମର ଇସ୍ତଫା ଦେବା ଦରକାର ନାହିଁ
ଅଧିକ କିଛି ପଇସା ଖର୍ଚ୍ଚ ହୋଇଯିବ ।"

ସଫଳର ସମ୍ପାଦକ କହିଲେ, "ସେଥିପାଇଁ ଚିନ୍ତା ନାହିଁ । ଯାହା
ଖର୍ଚ୍ଚ ହେବ ମୁଁ ଯୋଗେଇଦେବି । ମୋ ବିଭାଗଟା ସବୁଠୁ ବେଶି ଗୁରୁତ୍ୱ-
ପୂର୍ଣ୍ଣ । ସବୁ ବିଭାଗରୁ କାଟାକଟି କରି ମୋ ବିଭାଗକୁ ଅଧିକା ଆଣିବି ।
କେହି ଅମଙ୍ଗ ହେଲେ ସାଫ୍ ସାଫ୍ କହିଦେବି, ଦେଖ କବିତା ପାଠ
ବିଭାଗଟା ଯଦି ଭଣ୍ଡୁର ହୁଏ ତେବେ ତୁମେ ଦାୟୀ ହେବ, ମୁଁ ନୁହେଁ ।
କବି ସମ୍ମିଳନୀରେ କବିତାପାଠ ଭଣ୍ଡୁର ହେବା ଅର୍ଥ ସମସ୍ତ ସମ୍ମିଳନୀରେ
ନାଲିବତୀ ଜଳିବ । ଏହା କରିବାକୁ କେହି ଇଚ୍ଛା କରିବେ ନାହିଁ । ତେଣୁ
ଯଥେଷ୍ଟ ଟଙ୍କା ମିଳିବ । ତୁମେ ତୁମ କାମରେ ଆଗେଇ ଯାଅ ।"

ରିଜର୍ଭ ସମ୍ପାଦକ କାମରେ ଆଗେଇ ଗଲେ । ମଝିରେ ମଝିରେ
ସଫଳଆ ସମ୍ପାଦକ ରିଜର୍ଭକୁ କଅଣ କଅଣ କଲ ବୋଲି ପଚାରିବାରୁ ସେ
ଧମକେଇ ଦେଲ—"ଦେଖ ତୁମେ ଏମିତି ବାଠ ଓଗୋଳା କାମ କଲେ
ମୁଁ କିଛି ବୁଝିବିନି, ତୁମେ ସବୁ କର ।" ବାଧ୍ ଏଣିକରେ ସେ ଚୁପ୍
ରହିଲେ । ରିଜର୍ଭବାଲା ସବୁ ଖର୍ଚ୍ଚବାର୍ଚ୍ଚ ହିସାବ ସମ୍ମିଳନୀ ପରେ
ବୁଝାଇଦେବେ ବୋଲି କହି ଅଧିକରୁ ଅଧିକ ଜୋରରେ କାମ କରି
ଲାଗିଲେ । ସଫଳଆ ବି ଟଙ୍କା ମୁଣିର ମୁହଁ ଦମଲ କରିଦେଲା ।

କାମ କରେଇବା ଲୋକ ଠିକ୍ ଥିଲେ ସବୁ କାମ ଠିକ୍ ଠିକ୍
ହୋଇଥାଏ । ସମ୍ମିଳନୀର କର୍ମକର୍ତ୍ତାମାନେ ଯଥେଷ୍ଟ ସଂଖ୍ୟାରେ ଥିଲେ ।
ସୁତରାଂ ପ୍ରାକ୍ ସମ୍ମିଳନୀର କାର୍ଯ୍ୟଗୁଡ଼ାକ ଘଣ୍ଟାକଣ୍ଟା ପରି ଆଗଉଥାଏ ।

" " ପହିଲଦିନ ଆନୁଷ୍ଠାନିକ କାମ, ସେଥିରେ ବେଶି କିଛି ଗୁରୁତ୍ୱପୂର୍ଣ୍ଣ କାମ ଥିଲା ଭୋଜି । ମୁଖ୍ୟମନ୍ତ୍ରୀ ଯେଉଁଠି ଭୋଜି ଦେବେ ସେଠି ଅଉ କିଛି ବାକି ରହିବନା ! ଖାଇ ଖାଇ କବିମାନେ ଗଇଁଆ ହୋଇଗଲେ । କେତେ କବିଙ୍କର ପଛଗେଟ୍ ଖୋଲିଗଲା । ମନ୍ତ୍ରୀମାନଙ୍କର ଭାଷଣ ଶେଷ ହେବା ସଙ୍ଗେ ସଙ୍ଗେ ସେଦିନର ସଭା ସରିଗଲା ।

ପରଦିନ କବିତା ପାଠୋତ୍ସବ । ଅସୁମାରି କବିଙ୍କ ଦେହମନ ଉଷୁମ ହୋଇଉଠିଲା । ରାତିରେ କବିମାନେ କବିତାର ଦଣ୍ଡବୈଠକୀ ମାରିବାକୁ ଲାଗିଲେ । କିଏ କବିତାପାଠ ପୂର୍ବରୁ କଅଣ କହିବ, କେତେ ବେଗରେ ପଢ଼ିବ ତା'ର ଠିକ୍ ଠିକଣାରେ ଲାଗିପଡ଼ିଲେ । ଖାଉଜିକିଯାକ କବି ଗୋଟାଏ ଥାନରେ ଥିଲେ । ସମସ୍ତେ ପଠନାଭ୍ୟାସରେ ଲିପ୍ତ ରହିଲାରୁ କୁଆ ବସାରେ ଡେମଣା ପଶିବାର ପରିସ୍ଥିତି ସୃଷ୍ଟି ହେଲା । ସେ ସାହାହେଉ ଉଣାଅଧିକେ ସମସ୍ତେ କବିତାପାଠ କସରତରୁ କିଛି କିଛି ସାଧି ପକେଇଲେ । ଉତ୍କଣ୍ଠା, ଉଦ୍‌ବେଗ ଓ ଆଶଙ୍କା ଭିତରେ କବି-ମାନଙ୍କର ରାତି ପାହିଲା । ଦୁଇଟାରେ ପାଠୋତ୍ସବ ଆରମ୍ଭ, ହେଲେ ପାଠ କରିବା କବିମାନେ ଦିନ ବାରଟାରେ ମଣ୍ଡପରେ ଭିଡ଼ ଜମେଇ ଦେଲେ । ଶଜଭ ସମ୍ପାଦକ ଜଣେ ବନେଇଚୁନେଇ କହିଲାବାଲାଙ୍କୁ ପରିଚାଳନା କରିବା ଲାଗି ଠିକ୍ କରିଦେଇଥାନ୍ତି । ଆରମ୍ଭଟା ଯାହାର ମାତବରିଆ ହୁଏ, ତା'ର ସବୁକିଛି ଝୁଣ୍ଟାଝୁଣ୍ଟି ଲୁଚିଯାଏ । ପରିଚାଳନା ଦ୍ୱାରା କେବଳ ଅଧେ ସଫଳତା ଅଗ୍ରୀମ ସ୍ୱରୂପ ମିଳିଥାଏ ।

ପ୍ରଥମ କବିଙ୍କୁ ଡାକିବାକୁ ଯାଇ ପରିଚାଳକ ଏକପ୍ରକାର ବଢିଆ ସାହିତ୍ୟ ସୃଷ୍ଟି କରିଦେଲେ । କବିଙ୍କୁ ଚିହ୍ନିଥାଆନ୍ତୁ ବା ନ ଥାନ୍ତୁ ତାଙ୍କର କବିତ୍ୱ, ଦକ୍ଷତା ତାଙ୍କ ପାରିପାର୍ଶ୍ୱିକ କବିତ୍ୱ, ତାଙ୍କ ବଂଶରେ କବିତ୍ୱ, ପିଲାଆଡ଼ୁ ପଢ଼ି ସେ କେମିତି ରାଜାକବି ହେଲେ, ତାଙ୍କ ଖୁଲଚଲଣିରେ କିପରି କବିତ୍ୱ ଫୁଟିଛି ଏବଂ ଏବେ ସେ କିପରି ଏକ ଯୁଗାନ୍ତକାରୀ କବିତା ପରିବେଷଣ କରି ଶ୍ରୋତାମାନଙ୍କୁ ମନ୍ତ୍ରମୁଗ୍‌ଧ କରିବେ ତାର ଏକ ଓଜସ୍ୱିନୀ ଭାଷଣ ଦେଲେ । ଏକନମ୍ବର କବି ମଞ୍ଚକୁ ଉଠିଲାବେଳେ ଜଣେ ବ'ଜଣ ତାଳି ଆରମ୍ଭ କରୁଥି ଲ । ଶଜଭ ସମ୍ପାଦକ 'ଆ-ବେ' ବୋଲି

କବି ଗାରଡ଼େଇ ଗୁହିଁବାରୁ ତାଳିଟା ବନ୍ଦ ହୋଇଗଲା । କବି କାଗଜଟା ଧରି ଆରମ୍ଭ କଲେ "ଏବଂ କିନ୍ତୁ ଆପଣ—"ଠିକ୍ ଏତିକିବେଳେ ରିଜର୍ଭ ସମ୍ପାଦକ 'ହୁଁ', ଶବ୍ଦଟିଏ କହିଲେ । ସଙ୍ଗେ ସଙ୍ଗେ ତାଳିର ଲହଡ଼ା ଘରଟାକୁ କମ୍ପେଇଦେଲା । ତାଳି ବନ୍ଦ ହେବାକୁ ପୂରା ଦୁଇମିନିଟ ଲାଗିଗଲା । କବି ପୁଣି ବୋଲିଲେ "ଅବଶ୍ୟ ଗନ୍ଧମ କ୍ଷେତ—" । ରିଜର୍ଭ ସେନେଟେଟସ୍ ଅନୁଚ 'ସୁଁ' ଶବ୍ଦଟିଏ କରିଦେଲେ । ସଙ୍ଗେ ସଙ୍ଗେ ଶ୍ରୋତାଙ୍କ ଭିତରୁ ଓ୍ୱା, ଓ୍ୱା, ବହୁତ ଆଚ୍ଛା ବହୁତ ଆଚ୍ଛା, କମାଲ କିୟା ଭାଇ ଆଦି ଧ୍ୱନି ପୁଣି ୨ ମିନିଟଯାଏ ଘରକୁ ଥରେଇଦେଲା । ଜଣେ ଫଟୋଗ୍ରାଫର ଖଚ୍ ଖଚ୍ କରି ଫ୍ଲାସ ଲାଇଟ ପକାଇ ଦୁଇଟା ଫଟୋ ନେଇଗଲା । କେତେକ ଶ୍ରୋତା ମନେ ମନେ ଭାବିଲେ ଏହା ନିଶ୍ଚୟ ଅତି ଉଚ୍ଚଧରଣର କବିତା । କବିତା ନିଶ୍ଚୟ ବହୁତ ଆଗେଇ ଗଲାଣି । ସେମାନେ ନିଜେ କିନ୍ତୁ ବହୁତ ପଛରେ ରହିଗଲେଣି । ଏତେ ଲୋକ କବିତାର ମର୍ମ ବୁଝି ପାରୁଛନ୍ତି, କିନ୍ତୁ ହାୟ ସେମାନଙ୍କର ବୋକା ମୁଣ୍ଡରେ କିଛି ପଶୁ ନାହିଁ । ସେମାନେ ନିଜକୁ ଧିକ୍କାର କରିବାକୁ ଲାଗିଲେ । ୫୦ନମ୍ବର କବିଯାଏ ଏହିପରି ଧ୍ୱନି, ତାଳି ଓ ଫ୍ଲାସ ଲାଇଟ ଫଟୋର ସୁଅ ଛୁଟିଲା । ତା'ପରେ ତାଳିଆମାନଙ୍କର ତାଳିର ତୀବ୍ରତା କମି ଆସିଲା । ଉତ୍ସାହଦାତାମାନଙ୍କର ଧ୍ୱନି ମଧ୍ୟ ଗଦଡ଼ା ଧରିଲା । ରାତି ୯ଟା ବେଳକୁ କବିତା ପାଠୋତ୍ସବ ଶେଷ ହେଲା । ବହୁ ଶ୍ରୋତା ପାଠୋତ୍ସବର ଭୂୟସୀ ପ୍ରଶଂସା କରି, ଅଳ୍ପ କେତେ ଜଣ ନିଜର ସ୍ୱଳ୍ପଜ୍ଞାନ ଲାଗି ମନେ ମନେ ଅବଶୋଷ କରି ଚାଲିଗଲେ । ଆଉ ଦଳେ ରିଜର୍ଭ ସମ୍ପାଦକଙ୍କ ସାଙ୍ଗେ ଝିକାଝିକ୍ କଲି ଲଗେଇଲେ । ରିଜର୍ଭ ସମ୍ପାଦକ ରାଗିଯାଇ କହିଲେ—"ପୂରା ମଜୁରି ମୁଁ କେବେହେଲେ ଦେବିନି । ୫୦ଜଣ କବିଙ୍କ ପରେ ତୁମେମାନେ ଆଣ୍ଠେଇ ପଡ଼ିଲ କାହିଁକି ? ଶେଷଆଡ଼କୁ ତାଳି ବନ୍ଦ କରିଦେଲ ।" ସେମାନେ ସେମିତି ଗଁ ଗଁ ହୋଇ ଚୁପ ପଡ଼ିଗଲେ । "ମୁଁ ପୂରା ଟଙ୍କା ଦେବି କାହିଁ ?"

"ତୁମେ ଆଗରୁ ଜଣେଇ ଦେଲନି ଯେ ତୁମର ୮୪ଜଣ କବି କବିତା ପଢ଼ିବେ । ଆମେ ଏତେ କବିଙ୍କପାଇଁ ତାଳିମାରି ନ ଥାନ୍ତୁ । ହେଇ ଦେଖ, ଆମ ପାପୁଲି ଗୁଡ଼ାକ କେମିତି ବେଙ୍ଗ ପରି ଫୁଲିଯାଇଛି । ହେଇ ଦେଖ, ସେମାନଙ୍କର ପାପୁଲି କେମିତି ରକ୍ତବୁହା ହୋଇଯାଇଛି ।"

ସାଧାରଣ ସମ୍ପାଦକ ଦଉଡ଼ି ଆସି କଳକୋଳ ରୋକଦେଲେ । ଲୋକେ ଯଦି କଥାଟା ଜାଣିପିବେ ତେବେ ଘର ନ.ସନା କଥାଟାଏ ହୋଇଯିବ । ତାଳବାଲା ଓ ଧ୍ୱନିବାଲାଙ୍କୁ ସେମାନଙ୍କର ପୂରା ପାଉଣା ଦେଇ ବିଦାୟ କରିଦେଲେ । ସେମାନେ ଚାଲିଯିବା ପରେ ସେ ସମ୍ପାଦକ ଓ ଗଜର୍ଭ ସମ୍ପାଦକଙ୍କୁ କହିଲେ—"ତୁମକୁ ଏତେ ଗୁଡ଼ାଏ ଫଟୋ ନେବାକୁ କିଏ କହିଲା । ମୁଁ ଅନ୍ଦାଜ କରୁଛି ଦୁଇ ଶହରୁ କମ୍ ଫଟୋ ନିଆ-ଯାଇନି । ଏତେ ପଇସା ଦବ କିଏ ?"

"ସେଥିପାଇଁ ଚିନ୍ତା କରନା । ଫଟୋଗ୍ରାଫର ମୋ ଆଦେଶ ଅନୁଯାୟୀ ଖାଲି ଫ୍ଲାସ ଜଳେଇଛି । ଗୋଟିଏ ହେଲେ ଫଟୋ ଉଠେଇନି । ଫ୍ଲାସ୍ ପାଇଁ ମଧ୍ୟ ପଇସା ପଡ଼ୁନି, ତାହା ଲୋକ ସମ୍ପର୍କ ବିଭାଗରୁ ମୁଖ୍ୟମନ୍ତ୍ରୀଙ୍କ ଆଦେଶ କ୍ରମେ ମୁଁ ନେଇ ଆସିଥିଲି । ସେଥିପାଇଁ ଟଙ୍କାର ପ୍ରଶ୍ନ ଉଠିବନି । ତୁମେ ନିଶ୍ଚିନ୍ତ ରୁହ ।"

"ଯଦି କବିମାନେ ପଇସା ଦେଇ ସେମାନଙ୍କର ଗୋଟିଏ ଗୋଟିଏ ଫଟୋ ଚାହାନ୍ତି—?"

"ଫଟୋ ସାଧାରଣତଃ କେହି ଚାହାନ୍ତି ନାହିଁ । କିଏ ଫଟୋ ଉଠେଇଲା, କାହାପାଇଁ ଉଠେଇଲା, ତାହା ସେମାନେ ଜାଣିବେ କେମିତି ଯେ ଫଟୋ ମାଗିବେ ? ଦିନେ ଦି'ଦିନ ପରେ କବି କେଉଁଠି ଓ ଫଟୋ-ଗ୍ରାଫର କେଉଁଠି ତାହା କିଏ ଜାଣିବ । ଯଦି ନିହାତି କେହି ଚାଲାକଲୋକ କବିତା ବାଲୁଡ଼ି ଯାଇ ମାଗିବ ତେବେ ଟିକିଏ ଦୁଃଖ ଜଣାଇ କହି ଦେବାକୁ ହେବ—ବଡ଼ ଅବଶୋଷ ସେହି ଫଟୋଟି ନଷ୍ଟ ହୋଇଗଲା ।"

ସବୁ ସମ୍ପାଦକ ଓ ସହ ସମ୍ପାଦକ, ସମ୍ପାଦକ ଓ ଗଜର୍ଭ ସମ୍ପାଦକଙ୍କୁ ଉଚ୍ଛ୍ୱସିତ ପ୍ରଶଂସା କରି କହିଲେ—'ବାସ୍ତବିକ ତୁମ ବୁଦ୍ଧିଙ୍କ ଯୋଗୁ କବିତା ପାଠୋତ୍ସବ ସଫଳ ହେବାକୁ ବାଧ୍ୟହେଲା । ତା'ଛଡ଼ା ଆଉ ଅନ୍ୟ ଗତି ନ ଥିଲା ।"

—❋—

# ପତ୍ରିକା ଚଳେଇବା

ସମ୍ପାଦକ ଖଗେଶ୍ୱର ଦିନକୁ ଦିନ କ୍ଷୀଣକାୟ ହେବାକୁ ଲାଗିଲେ । ତାଙ୍କର ମାସିକ ପତ୍ରିକା 'ଆଗୁଆ' ବରାବର ପଛେଇବାକୁ ଲାଗିଲା । ନିଜ ପତ୍ରିକାର ଦୁରବସ୍ଥାରେ ସେ ମର୍ମାହତ ହେଉଥିଲେ । ଜଣକୁ ଜର ହେଲେ ତା ପାଖକୁ ଆସୁଥିବା ସମସ୍ତେ ଯେପରି କିଛି କିଛି ଔଷଧ ଖାଇବାକୁ ପରାମର୍ଶ ଦିଅନ୍ତି, ଖଗେଶ୍ୱରଙ୍କ ପାଖକୁ ଗପିବାକୁ ବା ଲେଖା-ଟିଏ ଦେବାକୁ ଆସୁଥିବା ବ୍ୟକ୍ତିମାନେ ବିନା ପାରିଶ୍ରମିକରେ ବହୁତ ବହୁତ ପରାମର୍ଶ ଦେଲେ । ବାଛି ବାଛି ଭଲ ଔଷଧ ସେବନ କଲାପରି ଖଗେଶ୍ୱର ଭଲ ଭଲ କେତୋଟି ପରାମର୍ଶକୁ କାମରେ ଲଗାଇଲେ ।

ଜଣେ ପରାମର୍ଶଦାତା କହିଲେ—''ଦେଖ 'ଆଗୁଆ'ରେ ଭଲ ଭଲ ପ୍ରବନ୍ଧର ସଂଖ୍ୟା ବଡ଼ କମ । ପ୍ରବନ୍ଧ ବିଭାଗ ପ୍ରତି ଅଧିକ ଦୃଷ୍ଟି ଦିଅ । ରିଡ଼ର୍ସ ଡାଇଜେଷ୍ଟ ପରି ବିଖ୍ୟାତ ପତ୍ରିକାରୁ ଭଲ ଭଲ ପ୍ରବନ୍ଧ ଅନୁବାଦ କରିଦିଅ । ଗୋଟିଏ ପତ୍ରିକାରେ ପ୍ରବନ୍ଧଟି ହେଲା ଅସଲ ବିଭାଗ, ପତ୍ରିକାର ମେରୁଦଣ୍ଡ । ସେଇଟା ଠାଣ ନ ହେଲେ 'ଆଗୁଆ' ଆଗେଇ ପାରିବନି । ବୁଦ୍ଧିଜୀବୀ ଓ ଚିନ୍ତାଶୀଳ ବ୍ୟକ୍ତିମାନେ ଯେଉଁ ପତ୍ରିକାରେ ପ୍ରବନ୍ଧ ଦେଖନ୍ତି ତାକୁ ଆଦର କରନ୍ତି ଓ ପଢ଼ନ୍ତି । ସେମାନଙ୍କ ଘରକୁ ବହୁଲୋକ ଯାଆନ୍ତି । ତାଙ୍କ ଟେବୁଲ ଉପରେ ଖଣ୍ଡିଏ 'ଆଗୁଆ' ଦେଖିଲେ ସମସ୍ତେ ଭାବିବେ ଯେ 'ଆଗୁଆ' ନିଶ୍ଚିତ ଭାବରେ ଗୋଟିଏ ଉଚ୍ଚକୋଟୀର ପତ୍ରିକା, ଏହାକୁ ପଢ଼ିବା ଦରକାର । ଏହା ଭାବି ସମସ୍ତେ ବଜାରରୁ ଗୋଟିଏ ଗୋଟିଏ 'ଆଗୁଆ' କିଣିବେ । ଫଳରେ ପାଠକ ସଂଖ୍ୟା ବଢ଼ିବ ଓ ଆର୍ଥିକ ଅବସ୍ଥାର ଉନ୍ନତି ମଧ୍ୟ ହେବ । ପଇସା ବେଶି ଆସିଲେ ସାଜସଜ୍ଜା ବଢ଼େଇବ । ବଢ଼ିଆ ବଢ଼ିଆ ପ୍ରବନ୍ଧ ଆହୁରି ଅଧିକ ସଂଖ୍ୟାରେ

କାଢ଼ିବ । ଦେଖିବ ଦିନେ କେଉଁଠାରେ 'ଆଗୁଆ' କିପରି ଝନଝନେଇ ଉଠିବ । ସେତେବେଳେ ମୋ କଥାକୁ ମନେପକାଉଥିବ ।"

କଥାଟାକୁ ଖଗେଶ୍ୱର ଗ୍ରହଣ କଲେ । ଅନ୍ୟାନ୍ୟ ବିଭାଗମାନଙ୍କୁ ସଂକୁଚିତ କରି ପ୍ରବନ୍ଧକୁ ବେଶି ସ୍ଥାନ ଦେଲେ । ବନଶୀରେ ମାଛ ଧରିବା ପାଇଁ ଯେପରି ଥୋପ ଚାରିଆରେ କିଛି ଖର୍ଚ୍ଚ କରାଯାଏ ଖଗେଶ୍ୱର ସେହିପରି ରିଡ଼ର୍ସ ଡାଇଜେଷ୍ଟ, ଲାଇଫ୍, ସ୍ପୁଟ୍‌ନିକ୍ ଆଦି ପତ୍ରିକା କିଣି ଓ ତହିଁରୁ ଭଲ ଭଲ ପ୍ରବନ୍ଧ ଅନୁବାଦ କରେଇବାରେ କିଛି ଧନ ଥୋପପରି ଖଟେଇଲେ । ବଢ଼ିଆ ବଢ଼ିଆ ପ୍ରବନ୍ଧ ବାହାରୁଛି ବୋଲି ଖବର କାଗଜରେ ବିଜ୍ଞାପନ ଦେଲେ ।

ଖୁବ୍ ହୈଚୈରେ ସହ ପ୍ରଥମ ପ୍ରବନ୍ଧ ପରିପୁଷ୍ଟ 'ଆଗୁଆ' ଆତ୍ମ-ପ୍ରକାଶ କଲା । ଖଗେଶ୍ୱର ଖବରକାଗଜ ବିଜ୍ଞାପନରେ ସନ୍ତୁଷ୍ଟ ନ ହୋଇ ନିଜେ ବଡ଼ ବଡ଼ ଚିନ୍ତାଶୀଳ ଓ ବୁଦ୍ଧିଜୀବୀମାନଙ୍କ ଘରକୁ ଗଲେ ।

ଜଣେ ବୁଦ୍ଧିଜୀବୀ କହିଲେ—"ହଁ ହଁ ମୁଁ ଖବର କାଗଜରୁ ପଢ଼ିଛି । ଜାଣି ଭାରି ଖୁସି ଲାଗିଲା ଯେ 'ଆଗୁଆ' ଏବେ ଆଗଉଛି । ମୁଁ କିନ୍ତୁ ଏ ପର୍ଯ୍ୟନ୍ତ 'ଆଗୁଆ'ର ଚେହେରା ଦେଖିନି । ପାଖରେ ଅଛି କି ?" ଖଗେଶ୍ୱର ବ୍ୟାଗରୁ ଖଣ୍ଡିଏ କାଢ଼ି ବଢ଼ାଇଦେଲେ । ବୁଦ୍ଧିଜୀବୀ ପତ୍ରିକାଟିକୁ ଓଲଟେଇ ପାଲଟେଇ ସନ୍ତୋଷ ପ୍ରକାଶ କଲେ । ଉତ୍ସାହ ଦେଇ କହିଲେ "ମନ୍ଦ ହୋଇନି, ଆପଣ ଯାଆନ୍ତୁ ମୁଁ ପଢ଼ି କହିବି ବିଷୟ-ଗୁଡ଼ିକର ନିର୍ବାଚନ ଠିକ୍ ହୋଇଛି କି ନା । ଯାହାହେଉ ଆପଣଙ୍କର ଉଦ୍ୟମ ପ୍ରଶଂସନୀୟ ।"

ଖଗେଶ୍ୱର ତାଙ୍କୁ ଦାମ୍‌ଟା ମାଗିବାକୁ ଯାଉଥିଲେ, କିନ୍ତୁ ଶାଳୀନତା ଓ ଭଦ୍ରତା ତାଙ୍କ ମୁହଁରେ ପାଳବଣ୍ଡା ମାଡ଼ିଦେଲା । ଫେରିଲା-ବେଳେ ସେ ଭାବି ଲାଗିଲେ—ପତ୍ରିକାର ଦାମ୍‌ଟା ଯାଚିବାକୁ ସୁଦ୍ଧା ତାଙ୍କର ଇଚ୍ଛା ହେଲା ନାହିଁ । ଯେଉଁମାନଙ୍କ ପାଇଁ ପ୍ରବନ୍ଧ ଭର୍ତ୍ତି କରାଗଲା ସେମାନେ ତ ମାଗଣାରେ ନେଲେ ଆଉ ପଇସା ଦେବ କିଏ ? ପ୍ରତ୍ୟେକ ପ୍ରବନ୍ଧପ୍ରେମୀଙ୍କ

ପାଖକୁ ଗଲେ । ଦାମ୍‌ ତ କେହି ଦେଲେ ନାହିଁ, କେତେଜଣ ଛାତ୍ର ଭଲ ପ୍ରବନ୍ଧ ଦେବେ ବୋଲି ପ୍ରତିଶ୍ରୁତି ଦେଲେ ।

ଦିଗୃହଦିନ ପରେ ଖଗେଶ୍ୱର ବସ୍‌ଷ୍ଟାଣ୍ଡରେ ଥିବା ପତ୍ରିକା ଏଜେଣ୍ଟ ପାଖକୁ ଗଲେ । ସେଠି ଦେଖିଲେ ପ୍ରତ୍ୟେକ ଥର ପରି ସେଥର 'ଆଗୁଆ', ପତ୍ରିକା ପଚୁଆ ହୋଇଯାଇଛି । ଏଜେଣ୍ଟ ଖଗେଶ୍ୱରଙ୍କୁ ଦେଖି କହିଲା—'ଆଜ୍ଞା ଏଥର ଜାହିଁକି ଲୋକେ 'ଆଗୁଆ' ଓଲଟେଇ ଦେଇ ମୁହଁ ମୋଡ଼ି ଦେଉଛନ୍ତି । କହୁଛନ୍ତି—ହେଃ । ଏଇଟା କଲେଜ ପଢ଼ୁଆଙ୍କ ପତ୍ରିକା ହୋଇଗଲା । ଆଗେ କେତେ ସୁନ୍ଦର ହେଉଥିଲା । ବସ୍‌ରେ ବସି ବଡ଼ ଆ ବଡ଼ ଆ ଗପ କବିତା ପଢ଼ି ଆନନ୍ଦ ପାଉଥିଲୁ । ଏଥିରୁ ଗୁଡ଼ାଏ ଆଳକୁଚ ମାଳକୁଚ ଜିନିଷ ଭର୍ତ୍ତି କରିଛନ୍ତି ଯେ ଏଗୁଡ଼ାକ ପଢ଼ିବ କିଏ ? କହେ। ଖ୍ରୀମାଷ୍ଟେଇ କେବେ ଜନ୍ମ ହେଲା, କୋଣାର୍କ ମନ୍ଦିର କେବେ ଭାଙ୍ଗିଲା, ପାନକୃଷ୍ଣ ଜଣେ ନା ଦି ଜଣ, ଏଥିରୁ ଆମକୁ କ'ଣ ମିଳିବ । ହେଃ ଏ ପତ୍ରିକାକୁ କିଏ କିଣିବ । ସମସ୍ତେ ଏମିତି କହି ମୁହଁ ମୋଡ଼ି ଚାଲି ଯାଉଛନ୍ତି ।

ଖଗେଶ୍ୱର ମୁଣ୍ଡରେ ହାତ ଦେଇ ଭାବି ଲାଗିଲେ—''ଯଥାର୍ଥ କଥା ତ, ସାଧାରଣ ଲୋକେ ଏସବୁ ପଢ଼ିବେ କାହିଁକି ? କଲେଜ ପିଲାଏ ଟଙ୍କା ପାଇବେ କୁଆଡ଼ୁ ? ସେମାନଙ୍କର ସିନେମା ସିଗାରେଟ୍‌କୁ ତ ଟଙ୍କା ନଅଣ୍ଟ । ହାତରେ ଗଣି ହେଉଥିବା ବୁଦ୍ଧିଜୀବୀମାନେ ପଇସା ନ ଦେଇ ବୁଦ୍ଧି ଦେବେ ବୋଲି କହିଲେ । ଯାହା ଅଳ୍ପ ବହୁତ କଷ୍ଟ କରିଥିଲି ତା ଉପରେ ଚପଟ ପଡ଼ିଲା । ନା ଆଉ ସେ ବାଟରେ ଆଗେଇବ ନାହିଁ । ଅନ୍ୟବାଟ ଦେଖିବା ।''

ଆଉ ଜଣଙ୍କର ପରାମର୍ଶ ମନେପଡ଼ିଲା । ସେ କହୁଥିଲେ ସାହିତ୍ୟର ଅତିରେ ହେଲା କବିତା । ଆଗେ କବିତାଗୁଡ଼ାକ ସିଧାସଳଖ ଥିଲା, ଲୋକେ କହୁଥିଲେ ହଁଅମ କବିତାଟାଏ ତ ଆଉ ଅଧିକ କ'ଣ । ଏବେ ଆଧୁନିକ କବିତା, କବିତାର ଇଙ୍ଗିତ ମହତ୍ତ୍ୱକୁ ବଢ଼ାଇ ଦେଇଛି । ଏହାକୁ ଦେଖିବାମାନେ ଲୋକଙ୍କର ଗୋଟାଏ କୌତୂହଳ ଜାତ ହେଉଛି । ସେମାନେ ଭାବୁଛନ୍ତି ଏଇଟା କ'ଣ, ମୁଣ୍ଡ ଘାଣ୍ଟୁଛନ୍ତି । ମୁଣ୍ଡର କସରତ

କରୁଛନ୍ତି । ଫଳରେ ମୁଣ୍ଡର ଶକ୍ତି ବଢ଼ୁଛି । ଲୋକେ ବେଶି ବୁଦ୍ଧିଆ ହେଉଛନ୍ତି, ତୁମେ ତ ତୁମ ପତ୍ରିକାରେ ଆଧୁନିକ କବିତା ଦେଉନ, ଏଥିରେ ତୁମ ପତ୍ରିକାର ପାଠକ ସଂଖ୍ୟା ବଢ଼ିବ କୁଆଡ଼ୁ ?

ଖଗେଶ୍ୱର ସ୍ଥିର କଲେ—ଦେଖିବା, ଗୋଟାଏ ଚେଷ୍ଟା ଚଳେଇବା । ଆଧୁନିକ କବିତା 'ଆଗୁଆ' ପାଇଁ ପଠାଇବାକୁ ଖବର-କାଗଜରେ ବିଜ୍ଞାପନ ଦେବା ପରଦିନ ଠାରୁ ଆଧୁନିକ କବିତାର ସ୍ରୋତ ଛୁଟିଲା । ଖଗେଶ୍ୱର ବଚ୍ଛାବଚ୍ଛି କରିବାକୁ ଯାଇ ଦେଖିଲେ ତାଙ୍କ ମୁଣ୍ଡ ଆଉ କାମ କରୁନି । କବିତାଗୁଡ଼ିକର ବିନ୍ଦୁ ବିସର୍ଗ କିଛି ହେଲେ ଗ୍ରହଣ କରିବାରେ ତାଙ୍କ ମୁଣ୍ଡ ଅସମର୍ଥ ହେଲା । ଶେଷରେ ସେ ନାମଜାଦା ଆଧୁନିକ କବି କେତେଜଣଙ୍କର କବିତା କାଢ଼ିଦେଲେ । ପତ୍ରିକା ପ୍ରକାଶ ପାଇବାର ତିନି ଚାରିଦିନ ପରେ ଦୁଇ ତିନି ଜଣ ବନ୍ଧୁ ସାହିତ୍ୟିକ ଆସି ଖଗେଶ୍ୱରଙ୍କ ଉପରେ ଚଢ଼ାଉ କଲେ ।—, "ଆଚ୍ଛା ଏ ଯେଉଁ କବିତା ସବୁ ଛାପିଛ ତାକୁ ଟିକଏ ଆମକୁ ବୁଝେଇଦେଲ । ଆହେ ତୁମେ ତ ତାର ଅଗମୂଳର ସନ୍ଧାନ ପାଉନ, ଅନ୍ୟମାନଙ୍କୁ ଛୁଞ୍ଚାଟାରେ କାହିଁ ଧନ୍ଦଉଛ । ଧନ୍ଦା ପାରୁନ ପତ୍ରିକାଟା ବନ୍ଦ କରିଦିଅ, ଡାଣ୍ଡି ଚପି ମାରୁଛ କାହିଁ ? ଫଳ ଏତିକି ହେବ ପାଠକମାନେ ପତ୍ରିକା ଦେଖିଲେ ନାକରେ ହାତ ଦେଇ ଗୁଡ଼ ପଳାଇବେ । ଏପରି କଦର୍ଯ୍ୟ ପରୀକ୍ଷା ନିରୀକ୍ଷା ବନ୍ଦ କର । ପତ୍ରିକାର ସ୍ୱାସ୍ଥ୍ୟ ଦୃଷ୍ଟିରୁ ଏଗୁଡ଼ାକ ବଡ଼ ଖରାପ ।"

ସତକୁ ସତ ଖଗେଶ୍ୱର ଦେଖିଲେ ପତ୍ରିକା ବିକ୍ରି ଆହୁରି ମାନ୍ଦେଇ ଯାଇଛି । ହାଉଳିଖାଇ ସେ 'ଆଗୁଆ'ରୁ ଆଧୁନିକ କବିତାଗୁଡ଼ାକ ଝାଡ଼ି ପକେଇଲେ । ଆଉ ଜଣଙ୍କର ଉପଦେଶ ମନେପଡ଼ିଲା । ସେ ରାଶିଫଳ ଛାପିବାକୁ କହିଥିଲେ । ସେ ଥିଲେ ଜଣେ ନାମଜାଦା ଜ୍ୟୋତିଷୀ । ତାଙ୍କ ଘରକୁ ଦଉଡ଼ିଲେ । ସମ୍ପାଦକ ତାଙ୍କ ଘରକୁ ଦଉଡ଼ିବାର ଦେଖି ସେ ଗୋଡ଼ ପ୍ରଥମେ ଲମ୍ବେଇଲେ । ଦୁଇ ଚାରିଥର ଦଉଡ଼ ବିଫଳ ହେବାରୁ ଶେଷରେ ଖଗେଶ୍ୱର କିଛି ପାରିଶ୍ରମିକ ଅଗ୍ରୀମ ସ୍ୱରୂପ ଦେଲେ । ରାଶିଫଳ ବାହାରିବା ପରେ ଜ୍ୟୋତିଷୀ ଖଗେଶ୍ୱରଙ୍କ ଅଫିସକୁ ଯାଇ 'ଆଗୁଆ'ର କାଟତି ଏହି ରାଶିଫଳ ଲାଗି ଅସମ୍ଭବ ଭାବରେ ବଢ଼ିଯାଇଛି ବୋଲି କହିଲେ । ସଙ୍ଗେ ସଙ୍ଗେ 'ଆଗୁଆ'ର କୋଷ୍ଠୀ ଗଣନା କରି

ପକାଇ କହିଲେ ଯେ ବୃହସ୍ପତି 'ଆଗୁଆ' ରାଶିକୁ ନିକଟରେ ଗମନ କଲେ, 'ଆଗୁଆ'ର ଅର୍ଥନୈତିକ ଅଗ୍ରଗତି ଅବଶ୍ୟମ୍ଭାବୀ । ଖଗେଶ୍ୱର ଆନନ୍ଦିତ ହୋଇ କପେ ଗୁହା ଧରେଇ ଦେଲେ । ସେ ଗୁହା ପିଇବା ସମୟରେ ଖଗେଶ୍ୱରଙ୍କର ଜଣେ ବନ୍ଧୁ ଅଗୃନକ ପଶି ଆସି 'ରାଶିଫଳ' ଉପରେ ଗାଳିଗୁଲଜ ଆରମ୍ଭ କରିଦେଲେ । ସିଧାସଳଖ ସେ କହିଲେ—"ଆହେ ଶେଷରେ ତୁମେ ଠକ ଜ୍ୟୋତିଷୀଙ୍କ ହାବୁଡ଼ରେ ପଡ଼ିଲ । ପାଠକଗୁଡ଼ାଙ୍କୁ ଭାଗ୍ୟବାଣୀ କରଉଛ କାହିଁକି ? ସେ ଅପକର୍ମାଗୁଡ଼ାଙ୍କର କାମ ହେଲା ଲୋକ ଠକିବା ଆଉ ଟାଉଟରି କରିବା, ସେ ଚୁହାଡ଼ଗୁଡ଼ାକ ସମାଜର ଶତ୍ରୁ ।"

ଖଗେଶ୍ୱର କଥାଟାକୁ ଯେତେ ବଦଳେଇ ଦେବାକୁ ଚେଷ୍ଟା କଲେ କିଛି ଫଳ ହେଲା ନାହିଁ । ଆଗନ୍ତୁକ କହି ଲାଗିଲେ । 'ଚୁହାଡ଼' ଶବ୍ଦ ଶୁଣିବା ମାତ୍ରେ ଜ୍ୟୋତିଷୀଙ୍କ ହାତରୁ ଗୁ କପ୍‌ଟି ଖସିପଡ଼ି ଲୁଗାତକ ନଷ୍ଟ କରିଦେଲା । ସେ ସଙ୍ଗେ ସଙ୍ଗେ ପ୍ରତି ଆକ୍ରମଣ ଆରମ୍ଭ କରିଦେଲେ—"ଓଃ ଆମେ ଚୁହାଡ଼ ହୋଇଗଲୁ ଆଉ ତମେ ଲେଖକଗୁଡ଼ାକ ଭାରି ବଢ଼ିଆ ମଣିଷ । ଅଭଦ୍ର ଗ୍ରନ୍ଥକାରଗୁଡ଼ାକ ଅଶ୍ଳୀଳ ଗପ, କବିତା ଲେଖି ଲୋକଙ୍କୁ ନଷ୍ଟ କରୁଛ । କୋମଳମତି ଯୁବଯୁବତୀଙ୍କର ଧ୍ୱଂସନାଶ କରୁଛ । ମାଡ଼କୁ ନଜର ନାହିଁକି ତୁମମାନଙ୍କ ମୁହଁରେ ଲାଜ ସରମ ନାହିଁ, ଓଲଟି ଆମକୁ ଟାଉଟର କହୁଛ । ଏଇ କଥାଟା ତୁମେ ଯଦି ଆମ ଭାଗ୍ୟବାଣୀ ଅଫିସରେ କହିଥାନ୍ତ ତୁମ ମୁଣ୍ଡ ଛେଚୁ ହୋଇଯାଇଥାଆନ୍ତା । ରକ୍ଷା ହୋଇଛି—ତୁମେ ଏଇଠି କହିଲ ।"

ଆଗନ୍ତୁକ ବଡ଼ ଅପ୍ରସ୍ତୁତ ହୋଇଗଲେ । ସେ ଭାବିପାରି ନ ଥିଲେ ଯେ ତାଙ୍କ ପାଖରେ ବସିଥିବା ଭଦ୍ରବ୍ୟକ୍ତି ଜଣେ ଜ୍ୟୋତିଷୀ ! ନଜର ଭୁଲ ପାଇଁ ସେ ବଡ଼ ଲଜ୍ଜିତ ହେଲେ । ବିନୟ ଭାବରେ କହିଲେ—"ଆଜ୍ଞା କ୍ଷମା କରିବେ ମୁଁ ଜାଣିପାରିଲି ନାହିଁ ଯେ ଆପଣ ଜଣେ ଜ୍ୟୋତିଷୀ । ମୁଁ ଆପଣଙ୍କୁ ଲକ୍ଷ୍ୟକରି କହିନି । ରାଜ୍ୟ ବାହାରୁ ଅନେକ ବୁଲନ୍ତା ଜ୍ୟୋତିଷ ଆସି ଲୋକମାନଙ୍କୁ ଠକିଠାକି ପଇସାନେଇ ଯାଆନ୍ତି, ସେମାନଙ୍କୁ ଲକ୍ଷ୍ୟକରି କହୁଛି । ଆପଣ ମୋତେ କ୍ଷମା କରନ୍ତୁ । ମୋ ଉପରେ ଆଜ ଗୋଟାଏ ଖଳଗ୍ରହର ଦୃଷ୍ଟି ପଡ଼ିଥିଲା—"

ଜ୍ୟୋତିଷୀ ପଟ୍ କରି କଥାଟାକୁ ଧରି ପକେଇ କହିଲେ—"ହଁ। ଆପଣ ଏତେବେଳେ ଯାଇ ଠିକ୍ ବାଟକୁ ଆସିଛନ୍ତି। ଆମ ଜୀବନରେ ଯାହା କିଛି ଘଟିଯାଉଛି ସବୁ ଗ୍ରହଙ୍କର ଖେଳ।"

"ଏବେ ମାନୁଛି ସେଇଟା ଠିକ୍, ହେଲେ ସେତକ ଆଗରୁ ଜାଣି ପାରିଲେ କାମରେ ଲାଗନ୍ତା। ଆପଣ ଯଦି ଆଗରୁ ଜାଣିପାରି ଥାଆନ୍ତେ ଯେ ଖୋଟିଏ ଖଳଗ୍ରହ ଆଜି ଗୁହା ଇଡ଼ି ଆପଣଙ୍କ ଲୁଗାପଟା ନଷ୍ଟ କରି-ବାକୁ ଯାଉଛି, ଆଉ ଖଗେଶ୍ୱର ବାବୁ ଜାଣିଥାଆନ୍ତେ ଯେ ଉକ୍ତ ଖଳଗ୍ରହ ତାଙ୍କର କମ୍ପଟିଏ ଭାଙ୍ଗିବାକୁ ଯାଉଛି ତେବେ ଖଗେଶ୍ୱର ବାବୁ ହୁଏତ ଗୁହା ଦେଇ ନ ଥାନ୍ତେ।

ଜ୍ୟୋତିଷୀ ଉତ୍ତେଜିତ ହୋଇ କହି ଉଠିଲେ—"ହଁ ହଁ, ଆପଣ ନିର୍ଘାଟ ସତକଥା କହୁଛନ୍ତି। ଟିକିଏ କଠିନ ପରିଶ୍ରମ କରି ଜ୍ୟୋତିଷ ଶାସ୍ତ୍ରର ଆହୁରି ଭିତରକୁ ଗୋଡ଼ା ମାରିଥିଲେ ସବୁ ଜଣାଯାଇଥାନ୍ତା, କିନ୍ତୁ ଦୈନନ୍ଦିନ ଘଟଣା ପାଇଁ ଏତେ ଗହନ ପରିଶ୍ରମ କରିବା ସହଜ ନୁହେଁ।"

ଆହୁରି ଜ୍ୟୋତିଷ ଚର୍ଚ୍ଚା ଚାଲିଥାଆନ୍ତା, କିନ୍ତୁ ଖଗେଶ୍ୱର କହିଲେ, "ଆଜ୍ଞା ଆପଣ ବସାକୁ ଯାଇ ଶୀଘ୍ର ଲୁଗାପଟା ଧୋଇ ପକାନ୍ତୁ।"

ଜ୍ୟୋତିଷୀ ଗଲାବେଳେ କହିଲେ, "ଯାହାହେଉ ମୁଁ ଜଣେ ବନ୍ଧୁଙ୍କର ଦୃଢ଼ଧାରଣା ଜ୍ୟୋତିଷ ଉପରେ ଆଣିପାରିଲି। ସେ ଆନନ୍ଦ ତୁଳନାରେ ଏ କ୍ଷତିଟା ନଗଣ୍ୟ।"

ଜ୍ୟୋତିଷୀ ଚାଲିଯିବା ପରେ ଆଗନ୍ତୁକ ପୁଣି ଆରମ୍ଭ କଲେ—"ଯମଦ୍ୱାରେ ଦିନେ ନା ଦିନେ ବୁଝିବେ ଏଗୁଡ଼ାକ ଭଣ୍ଡ କାରବାର। ତା ପରେ ତା ପ୍ରତି ଆଉ କାହାରି ଆଗ୍ରହ ରହିବ ନାହିଁ। 'ଆଗୁଆ' ପଞ୍ଜିକାଟି ଆଜଯାଏ ଏ ଭଣ୍ଡାମିରୁ ମୁକ୍ତ ଥିଲା। କାହିଁକି ତା ନାଆଁଟା ବୁଡ଼େଇଦେଲ ଏଥିପାଇଁ ତୁମର କେତୋଟି ଗ୍ରାହକ କମିଯିବେ ସିନା, ବଢ଼ିବେ ନାହିଁ। ଜ୍ୟୋତିଷୀ କେତେ ଟଙ୍କା ନେଲା ?"

"ପଇସା ହାଙ୍କୁଥିଲା। ଜୋକପରି ଲାଗିରହି କୋଡ଼ିଏ ଟଙ୍କା ନେଲା।"

"ଏବାଟେ କୋଉଏ ଗଲା । ମୁଁ ନିର୍ଦ୍ଦିଷ୍ଟ ଭାବରେ କହିବି ତୁମେ ଖୁବ୍ କମରେ ନଅଜଣ ଗ୍ରାହକ ହରେଇବ, ସେମାନେ ରାଶିଫଳର ପରମ ଶତ୍ରୁ । ମୋ ଛୋଟକଥା ମାନ; 'ଆଗୁଆ'ର ସାଇଜ ଟିକଏ କମେଇ ଦିଅ ଆଉ ପ୍ରଚ୍ଛଦ ପଟଟିର ରୂପସଜ୍ଜା ଆହୁରି ବଢ଼ିଆ କରିଦିଅ, ଦେଖିବ, ନିଶ୍ଚୟ ଗ୍ରାହକ ସଂଖ୍ୟା ହୁ ହୁ ହୋଇ ବଢ଼ିଯିବ ।"

ସବୁ କଥାଗଲା ହେଲେ ଗ୍ରାହକ ଯେତିକ ସେତିକ । ଖଗେଶ୍ୱର କପାଳରେ କର ଚାଡ଼ ଭାବି ଲାଗିଲେ—"ହାୟ ହାୟ, ଏଠି କ ସାହିତ୍ୟ ସାଧନା ହେବ । 'ଆଗୁଆ' ୪୭ ବର୍ଷ ହେଲା ଆଣ୍ଠୁ ଗଣ୍ଡି ଚାଲିଛି । ଯା ଉପରେ କାହାର ସୁଦୃଷ୍ଟି ପଡ଼ିଲା ନାହିଁ । ଏ ରାଜ୍ୟରେ ପନ୍ଦର ହଜାରରୁ ଅଧିକ ହାଇସ୍କୁଲ, ସ୍ୱରଶହ କ ପାଞ୍ଚଶହ କଲେଜ । ସବୁ ସ୍କୁଲ କଲେଜ ଗୋଟିଏ ଲେଖାଏଁ ଆଗୁଆ ନେବେ ବୋଲି ସରକାର ଯଦି ଗୋଟାଏ ଆଦେଶନାମା ଜାରିକରି ଦିଅନ୍ତେ ତେବେ 'ଆଗୁଆ'ଟି ବଞ୍ଚିଯାଆନ୍ତା । ସାହିତ୍ୟ ଆଡେ ଦୃଷ୍ଟିଦେବାକୁ ସରକାରଙ୍କର ସମୟ କାହିଁ । ଦରକାର ବା କଅଣ । ଭିନ ରାଜ ତାଙ୍କୁ ଭୋଟ ଚିନ୍ତା ଘାରିଲା । ଶିକ୍ଷା ନିର୍ଦ୍ଦେଶାଳୟ ବି କୋଉ ଦୃଷ୍ଟିଦେଲା ? ୪୭ବର୍ଷ ତିଷ୍ଠିଲେ ବି ଗୋଟାଏ ପତ୍ରିକାକୁ ସ୍ୱୀକୃତ ଦିଆଯାଇ ନାହିଁ । ଅଥଚ କେତେଟା ମାସ ବାହାରିଥିବା ପତ୍ରିକାକୁ ସ୍ୱୀକୃତ ଦିଆଯାଇଛି । ଶିକ୍ଷା ନିର୍ଦ୍ଦେଶାଳୟରେ ସାହିତ୍ୟ ସାହିତ୍ୟ ଉପରେ ନଜର ଦେଉଛି କିଏ ? ସେଇଟା ତ ହେଇଛି ଅଧ୍ୟାପକ ଓ ମାଷ୍ଟରମାନଙ୍କୁ 'ବଦଳି' ଘଣା ଭିତରେ ପୂରେଇ ପେଷିବା ଓ ସେମାନଙ୍କ ଠାରୁ ନିରୁତା ତେଲ କାଢ଼ି ନିଜ ହାତ ଚିକଣେଇବା । ପତ୍ରିକାକୁ ଘଣା ଭିତରେ ପୂରେଇଲେ ତାଙ୍କ ଘଣାଟା ଓଲଟି ଜାମ୍ ହୋଇ-ଯିବ । ଆଉ କେତେଦିନ 'ଆଗୁଆ' ପଡ଼ ଉଠି ହାତଗୋଡ଼ ଭାଙ୍ଗି ଆଗେଇବ । ହେ ଭଗବାନ 'ଆଗୁଆ'ର ଜୀବନ ଦୀପ ଲିଭିଯିବା ଆଗରୁ ମୋ ଜୀବନ ଦୀପଟା ଲିଭିଯାଉ—"

ଏତିକବେଳେ ସାହିତ୍ୟ ଷଣ୍ଢ ରବି ମହାପାତ୍ରେ ଆସି ପହଞ୍ଚିଗଲେ । ଶେଷ ପଦଟା ତାଙ୍କ କାନରେ ପଡ଼ିଗଲା । ସେ ଆଶ୍ଚର୍ଯ୍ୟ ହୋଇଯାଇ କହିଲେ "କହେ। ଜୀବନ ଦୀପକୁ ଲିଭେଇବ କାହିଁକ ?"

"ଆଚ୍ଛା ଗୋଲକ ଧନ୍ଦାରେ ମୁଁ ପଡ଼ିଛି । 'ଆଗୁଆ'କୁ ବଞ୍ଚେଇ-ବାକୁ ଗଲରୁ ମୁଁ ମରୁଛି । ମୁଁ ବଞ୍ଚିବାକୁ ଚେଷ୍ଟା କଲରୁ 'ଆଗୁଆ'ର ହିକ୍କା ଉଠୁଛି । ବିରକ୍ତ ହୋଇ କହିଦେଲି—ମୋ ଜୀବନ ଧାପଟା ଲିଭି-ଯାଉ । 'ଆଗୁଆ' ହେଲେ ବଞ୍ଚିଯିବ ।"

"ହଇହେ ତୁମ ଧାପ ଲିଭେଇବାକୁ କିଏ ଆସିବ ?"

"ଯମ ଆସିବ ।"

"ହୁଃ ! ସେ ଯେତେବେଳେ ତୁମ ପାଖରେ ଆସି ପହଞ୍ଚିଥିବ, ତୁମେ ଓଲଟି ପଚାରି ତାକୁ କହିବ—ଆଜ୍ଞା ଆପଣଙ୍କ ରାଜ୍ୟର ଗୋଟିଏ ପୂର୍ଣ୍ଣ-ପୃଷ୍ଠା ବିଜ୍ଞାପନ ଦିଅନ୍ତୁ । ଆପଣଙ୍କ ରାଜ୍ୟ ବିଷୟରେ ଲୋକଙ୍କର ବହୁଭ୍ରମ ଧାରଣା ଦୂର ହୋଇଯିବ ।"

"ହେଃ ! ନଜାଣି ବଡ଼ ଷଣ୍ଢ (ମହାପାତ୍ର) ପଦବୀ ଧରିଛ । ସବୁ ପ୍ରକାର ଚେଷ୍ଟା କଲି । କେଉଁଥିରେ ଗ୍ରାହକ ସଂଖ୍ୟା ବଢ଼ୁନି, ନ ବଢିଲେ ପତ୍ରିକା ବଞ୍ଚିବ କିପରି ?"

"ସବୁ ଉପାୟ କରିନ ବନ୍ଧୁ, ସବୁ ଉପାୟ କରିନ । ଗୋଟାଏ ଉପାୟ ବତେଇବି, କରିବ ?"

"ସୁଫଳ ଫଳିବାର ଆଶା ଦେଖିଲେ ନ କରିବ କାହିଁକି ?"

"ତେବେ ଗୋଟାଏ କାମ କର । ଆଗୁଆ ସାଙ୍ଗକୁ ଆଉ ଗୋଟାଏ ପତ୍ରିକା କାଢ଼ । ତା ନା ଦିଅ 'ପଛୁଆ' । ଅର୍ଥାତ ଯିଏ ପଛରେ ଲୁଚିରହି ସମସ୍ତଙ୍କ ଠାରେ କଳା ସଜକରେ ।"

"ହେଃ ! କଅଣ ଥଟ୍ଟା କରୁଛ କି ? ଗୋଟାଏ ସମ୍ଭାଳିପାରୁନି, ଦୁଇଟା କାଢ଼ିବି କେମିତି ? ଭଲ ବୁଦ୍ଧି ଟାଏ ଦେଲ ।—"

"ଓ ! ନଈ ନ ଦେଖୁଣୁ ଲଙ୍ଗଳା । ସବୁଟା ଶୁଣିସାର । ପଇସା କଥା ପରେ ଉଠିବ । ତୁମେ ଦୁଇଟିଯାକ କାଢ଼ିବ । 'ପଛୁଆ'ରେ

ସମ୍ପାଦକ 'ଜଗନ୍ନାଥ' ନାମ ରଖିବ । ବଂଶପରିଚାରେ ପରସ୍ପରକୁ ଗାଳି-ଗୁଲଜ ଦେଇ ହେବ । ପ୍ରଥମେ 'ଆଗୁଆ'ରେ ବାହାରିଥିବା ଗୋଟାଏ ଲେଖାକୁ କେନ୍ଦ୍ରକରି 'ପଛୁଆ' ଅତି ଭଣ୍ଡସଣ୍ଡ ଭାଷାରେ ଶୋଧିବ — ମାନେ ସମାଲୋଚନା କରିବ । ତା ଉତ୍ତରରେ 'ଆଗୁଆ' ଡବଲ ଭଣ୍ଡସଣ୍ଡ ଭାଷାରେ 'ପଛୁଆ'କୁ ଶୋଧିବ । ଗାଳିଗୁଲଜ ଧମାଧମ୍ ଚଳେଇବ । ଭଦ୍ର ଅଭଦ୍ରର ବାଛବିଚାର ରଖିବ ନାହିଁ । ଥରେ ପଛୁଆର ଗାଳି ତ ଆରଥର ଆଗୁଆର ଗାଳି । ସେ ବିଷୟଟା ଟିକିଏ ଥଣ୍ଡା ହୋଇ ଆସିଲା ବେଳକୁ ଆଉ ଗୋଟାଏ ନୂଆ ବିଷୟ ଉପରେ ଚଳେଇବ । ମନେରଖ ଗାଳିଗୁଲଜ ସାହିତ୍ୟରେ ଆରମ୍ଭ କରିବ, ଆଉ ବ୍ୟକ୍ତିଗତ କୁତ୍ସା ଓ ଗୃହ ଛିଦ୍ର ଉପରେ ମାଡ଼ିଯିବ । ମଝିରେ ମଝିରେ ଚରିତ୍ର ସଂହାର ବୋମାରୁ ଗୋଟାଏ ଗୋଟାଏ ଛାଡ଼ି ଦେଉଥିବ । ଶହେକେ ଦୁଇଶହ କଥା ମିଛ ଚଳେଇବ । ତିନିଶହ ମିଛ ହେଲେ ବି ପରବାୟ ନାହିଁ । କେହି ପଚାରିବାକୁ ନାହିଁ । ମାନହାନିର ପ୍ରଶ୍ନ ବି ଉଠିବ ନାହିଁ । ଯିଏ 'ଆଗୁଆ' କିଣିବ ସିଏ ପଛୁଆ ନ କିଣିଲେ ତା ଭାତ ହଜମ ହବନି । 'ଆଗୁଆ'ର ଅବଶ୍ୟ ଏକ ସ୍ୱତନ୍ତ୍ର ବିଭାଗ ଖୋଲି ସେଥିରେ ଗାଳିଗୁଲଜ ଆରମ୍ଭ କରିବ । ତିନି ଚାରିଟା ମାସରେ ଦେଖିବ ତୁମର ଗ୍ରାହକ ଲିଷ୍ଟରୁ ୧୦ଜଣ ମାତ୍ର ଖସି ଯାଇଅଛନ୍ତି, କିନ୍ତୁ ହଜାରେ ନୂଆ ଗ୍ରାହକ ଖାତାରେ ପଶିଛନ୍ତି ।

ବୁଝିଲ, ତୁମେ ଯେଉଁ ସାହିତ୍ୟ ପରିବେଷଣ କରି ଖୁବ୍ ଆତ୍ମପ୍ରସାଦଟାଏ ଅନୁଭବ କରୁଛ ତାକୁ ମୋଟେ ଦଶ ଜଣ ପଢ଼ନ୍ତି, ଜନସାଧାରଣଙ୍କ ସାହିତ୍ୟ ବାତ, ଦେଖିବ ହଜାର ହଜାର ବୁଭୁକ୍ଷୁ ଆସି ଭିଡ଼ ଜମେଇବେ । 'ଆଗୁଆ'ରେ ଯାହା ରହୁଥିଲା ତାହା ରହୁଥିବ, କେବଳ ନୂଆ ଗାଳିଗୁଲଜ ବା ସମାଲୋଚନା ବିଭାଗଟାଏ ଖୋଲିବ । 'ଆଗୁଆ' ଧର୍ମଛଡ଼ା ହୋଇଗଲା କି ଅଜାତିଆ ହୋଇଗଲା ବୋଲି ଅପବାଦ ମିଳିବନି । ମୁଁ କାଲି ତୁମକୁ ହଜାରେ ଟଙ୍କା ଦେବି । ସେଥିରେ 'ପଛୁଆ'କୁ ଚଳେଇ ଦିଅ । ବର୍ଷକ ପରେ ମୋତେ ଦୁଇହଜାର ଟଙ୍କା ଦେବାଲାଗି ତୁମ ପାଖରେ ଯଥେଷ୍ଟ ପଇସା ହୋଇଯାଇଥିବ ।

ରବି ମହାପାତ୍ରେ ଖଗେଶ୍ୱରଙ୍କୁ ପରଦିନ ନିଜ କଥା ମୁତାବକ ହଜାରେ ଟଙ୍କା ଦେଇ ବିଦାୟ ନେଲେ । ଚାଲି ବିଶ୍ୱବିଦ୍ୟାଳୟରେ ଡକ୍ଟରେଟ୍ ପାଇଁ ସେ ଦେଢ ବର୍ଷ ସ୍କଲାରସିପ୍ ପାଇ ଗ୍ଳକିଗଲେ ।

× ×

ଦେଢ଼ ବର୍ଷ ପରେ ରବି ମହାପାତ୍ରେ ପଶିଲେ ଖଗେଶ୍ୱର ଓ ତାଙ୍କ 'ଆଗୁଆ'—ପଛୁଆ ଅଫିସକୁ ଚିହ୍ନି ପାରିଲେ ନାହିଁ, ଖଗେଶ୍ୱର ପ୍ରେଣ୍ଡ୍ ବନି ଯାଇଥିଲେ । ବେକ ନ ଥିଲା କହିଲେ ଚଳେ, ଅଫିସରେ ଗୋଟିଏ ହେଲେ ଅଳନ୍ଧୁ ନାହିଁ । ବର୍ମା ସାଗୁଆନର ଟେବୁଲ, ଚୌକି ଟେବୁଲ ଉପରେ ସନମାଇକା ଚକ୍ ଚକ୍ କରୁଛି । ତା'ଉପରେ ଟେଲିଫୋନ୍, ଦୁଆରରେ ସିଲକର ପରଦା, କଣରେ ଦାମିକା ସୋଫାସେଟ୍ ।

ଖଗେଶ୍ୱର ଜନୁ ଦେଖିବାମାତ୍ରେ କୁଣ୍ଢେଇ ପକେଇଲେ, ଦୁଇ ତିନି ଦିନ ଧରି ଭୂରି ଭୋଜନ ଓ ମଉଜ ମଜଲିସ ଚାଲିଲା । ଶେଷରେ 'ପଛୁଆ'ର ଦାୟିତ୍ୱ ଓ ଦୁଇ ହଜାର ଟଙ୍କାର ଗୋଟିଏ ଚେକ୍ ରବି ମହାପାତ୍ରଙ୍କ ହାତରେ ଦେଲେ ।

—o—

# ଓଠମୂଳିଆ ଯୁଦ୍ଧ କାହାଣୀ

କେଶରୀ କେଶ କର୍ଷକ, ଶାର୍ଦ୍ଦୁଳ ଦଳ ଦଳନ ଉଳପକ୍ଷ ପାଷାଣ୍ଡ ଲଣ୍ଡ ଭଣ୍ଡକ କୁଳଷଣ୍ଡ ମଣ୍ଡନ, ନଷ୍ଟଭ୍ରଷ୍ଟ ଦୁଷ୍ଟ ଗୋଷ୍ଠୀ ତାଡ଼ନ ଯଷ୍ଟି, ନିଶଙ୍କ ଚଣରଙ୍କ ଧବଙ୍କ ଖୋଳନ କାଙ୍କ, ଭାରତୀ ମତିଅତି ତୃପ୍ତି-ଦାୟକ, ପରମ ପରାକ୍ରମ ଗୁଳ୍ମ କୁଳଦ୍ରୁମ, ବାରାଧିବାରବର ବୈରୀଗର୍ବ-ଗଞ୍ଜନ, ପ୍ରଜାରଞ୍ଜନ, ଦର୍ପଭଞ୍ଜନ, ହସ୍ତୀପତି ଭ୍ରମରବର ମାନଧାତା ଜମ୍ବୁ ଦ୍ୱୀପାଧିପତି ବସନ୍ତରଣ ସିଂହ ବାହାଦୁରଙ୍କ ଦରବାର ବେଶ୍ ଜମୁମ ହୋଇ ଉଠିଥାଏ । ରବର ଫେଣ ଗଦି ଉପରେ ଆରାମରେ ବସି ସେ ମଝିରେ ମଝିରେ ନିଶ ସାଉଁଳି ଦେଉଥାଆନ୍ତି । ଅତରର ମହକରେ ଦରବାରଟି ଫାଟି ପଡୁଥାଏ । ତାପ ନିୟନ୍ତ୍ରଣ ଯୋଗୁ ପ୍ରକୋଷ୍ଠ ଖୁବ୍ ଆରାମଦାୟକ ହୋଇଥାଏ । ଗଦି ବଡ଼ିଆ, ହାଓ୍ୱା ଆରାମପ୍ରଦ । ଦରବାରୀଆମାନେ ମିଠା ମିଠା କଥାରେ ମନ ମୋହି ଦେଉଛନ୍ତି । ସର୍ବୋପରି ମନ୍ତ୍ରୀଙ୍କ ଏରଣ୍ଡବୀଜ ତୈଳ ମନକୁ ଏକାବେଳେକେ ପିଚ୍ଛିଳ କରିଦେଉଥାନ୍ତି । ତଥାପି ରାଜା ମଝିରେ ମଝିରେ "ଉଃ, ଆଃ, ଇସ୍, ହେଉ, ଦୁର୍" କହି କଡ଼ ମୋଡ଼ୁ-ଥାଆନ୍ତି ଓ ବେଳେ ବେଳେ ଫେଣ ରବର ଗଦିକୁ ରାମପୁଡ଼ାଏ ଲେଖାଏଁ ଦେଉଥାଆନ୍ତି, ରାଜାଙ୍କ ପ୍ରତ୍ୟେକ ବିରକ୍ତି ସୂଚକ ଶବ୍ଦ ଓ ଗଦି ଉପରେ ପଡ଼ୁଥିବା ରାମପୁଡ଼ା ଶୁଣି ଦରବାରୀଆମାନେ ମୁହଁରେ କିଛି ନ କହିଲେ ବି ମନେ ମନେ ଭୀତତ୍ରସ୍ତ ହୋଇପଡ଼ୁଥାଆନ୍ତି । କିଏ ଭାବୁଥାଏ ରାଜାଙ୍କର ପେଟକୁ ମାରୁଛି, କିଏ ଭାବୁଥାଏ ହିଦ ଗଲୁ କରୁଛି । କିଏ ବା ଠିକ୍ କରି ନେଇଥାଏ ରାଜା ବୋଧହୁଏ କାହାର କାହାରି କଥାରେ ବିରକ୍ତି ପ୍ରକାଶ କରୁଛନ୍ତି । ଏମିତି କିଏ କଅଣ ଭାବି ଯାଉଥାନ୍ତି । ହେଲେ ମନ୍ତ୍ରୀ ଅସଲ କଥାଟାକୁ ଠଉରେଇ ନେଇଥାଆନ୍ତି । ସ୍ୱରିଆଡ଼କୁ ନଜର ଦେବାରେ ତାଙ୍କର ଯେ ଟିକିଏ ଖଇରା ହୋଇଯାଇଛି ସେଥିରେ ତାଙ୍କର ଆଉ କିଛି

ସନ୍ଦେହ ରହିଲା ନାହିଁ । ପୁଣି ସେ ମନକୁ ବୁଝାଇବାରେ ଲାଗିଲେ— "ଆଉ ଅଧିକ ବା କଅଣ କରିଥାଆନ୍ତି, ଯେଉଁଠି ଯେତେ ରକମ ଇଲମ ଥିଲା, ପ୍ରୟୁକ୍ତ କଲି, ରାଜା ଅନ୍ୟଆଡ଼େ ଥିଲାବେଳେ ଲୋକ ଲଗେଇ ନକେ ଲାଗି ପୁଞ୍ଜା ପୁଞ୍ଜା ପୋଛିଦେଲି, ଆଉ କଅଣ କରନ୍ତି ?"

ଭାବନାରେ ସେ ଏତେଦୂର ବିଭୋର ହୋଇଯାଇଥିଲେ ଯେ ଶେଷ ପଦଟାକୁ ସେ ଓଠ ପଛରେ ଅଟକାଇ ପାରି ନ ଥିଲେ । ତାହା ତାଙ୍କ ଓଠ ଢ଼'ଟାକୁ ଠେଲି ପଦାକୁ ବାହାରି ଆସିଲା । ରାଜା ଶୁଣିପାରିଲେ "ଆଉ କଅଣ କରନ୍ତି ।"

ରାଜା ମନେ ମନେ ଠିକ୍ କରିନେଲେ ଯେ ଏଇଟା ମନ୍ତ୍ରୀଙ୍କର କ୍ଲୀବତା ଛଡ଼ା ଆଉ କିଛି ନୁହେଁ । ଟିକିଏ ଅସନ୍ତୁଷ୍ଟ ହୋଇଯାଇ ସେ କହିଲେ—"ଆହେ ଏଗୁଡ଼ା କ କଥା କହୁଛ କହେ । ଆହେ ! ଏଗୁଡ଼ାକ ଏତେ ପ୍ରବଳ ହୋଇଉଠିଲେଣି ଯେ ମୋତେ ତ ବନା ଦ୍ୱିଧାରେ ହଇରାଣ କରିପକାଉଛନ୍ତି । ଆଉ ମୋ ପ୍ରଜାକୁଳଙ୍କ କଥା କହିବ କଅଣ ? ସେମାନଙ୍କର ଆଉ କିଛି ବାକି ରଖୁଥିବେ ନା ? ଶୋଷି ଶୋଷି ମୋ ପ୍ରଜାମାନଙ୍କୁ ଶେତା ଉକେଇ ଦେବେଣି ! ଯେଉଁଠି ମୋର ନିସ୍ତାର ନାହିଁ, ସେଠି ମୋ ପ୍ରଜାଙ୍କ ଅବସ୍ଥା ହେଉଥିବ କଅଣ ?

ବିବ୍ରତ ହୋଇପଡ଼ି ମନ୍ତ୍ରୀ କହିଲେ, "ମହିମା ମୁଁ ହାରିଯାଇଛି । ସବୁ ପ୍ରକାର ଉପାୟ କଲି ହେଲେ ସେମାନଙ୍କୁ ମୂଳପୋଛ କରିପାରିଲି ନାହିଁ ସମସ୍ତ ବୁଦ୍ଧି ମୁଁ ଖଟେଇଛି । ଅଧିକ ଖଟେଇବାକୁ ଆଉ ଟିକିଏ ବି ବୁଦ୍ଧି ନାହିଁ । ଯଦି କହିବେ ତେବେ ମୁଁ ଇସ୍ତଫା ଦେଇଦେବି । ବଡ଼ ବୁଦ୍ଧିଆ ଜଣେ କିଏ ଆସୁ ଗୋଟାଏ କିଛି ଉପାୟ କାଢ଼ୁ । ମୁଁ ସେଥିରେ ଅରାଜି ନାହିଁ । ଯାହାକୁ ମୁଁ କରି ନ ପାରିବି, ତାକୁ ଅନ୍ୟ କେହି ଜଣକୁ କରିବା ପାଇଁ ଛାଡ଼ି ଦେବି । ରାଜନୈତିକ ଠାଉଟରଙ୍କ ପରି ନ ପାରିବା ହତ୍ତ୍ୱେ ଆବୋରି ରହି ଶେଷରେ ଲୋକଙ୍କ ହାଗ ଚଣ୍ଡିଆ ଖାଇବାକୁ ମୁଁ ପସନ୍ଦ କରେ ନାହିଁ ।"

ମଂନ୍ତ୍ରୀଙ୍କୁ ହାଉଳି ଖାଇଯିବାର ଦେଖି ରାଜା ପ୍ରବୋଧ ଦେଲାପରି କହିଲେ—"ଆ-ହା ! ଏମିତି ହାଉଳି ଖାଉଛ କାହିଁ ? ମାନୁଛି ତୁମର

ଆନ୍ତରିକତା ଅଛି, ହେଲେ ଶତ୍ରୁ ବଳକୁ କମ୍ କରି କଳିବାର ଗୋଟିଏ ଭୁଲ ଅଭ୍ୟାସ ତୁମର ଥିବ ମୁଁ ଦେଖୁଛି । ଗୋଟାଏ ଜନସଂଖ୍ୟାକୁ ନିପାତ କରିବାକୁ ହେଲେ ତା ପିଛା ଜୋକପରି ଲାଗିରହିବା ଦରକାର । ମାସେ ଦି'ମାସ ଯାଏ ସମ୍ପୂର୍ଣ୍ଣ ନିଶ୍ଚିହ୍ନ ହେବାର ଦେଖିବା ପର୍ଯ୍ୟନ୍ତ ମାଡ଼ ଉପରେ ମାଡ଼ ଚଢାଉଥିବ । ତୁମେ କଣ କରୁଛ କଅଣ । ଗୋଟାଏ ଦିନ ହୈ ଚୈ କରିଦେବ ତ ଛଅମାସ ଖଣ୍ଡେ ଶୋଇପଡ଼ିବ ଥରକେ କି ବଂଶ ମୂଳପୋଛ ହୁଏ ? ଯମ ଦାଢ଼ରୁ ଯେଉଁମାନେ ବର୍ତ୍ତିଥାନ୍ତି, ସେମାନେ ପୁଣି ବଂଶ ବଢ଼େଇ ଯେତିକ ସେତିକ ହୋଇଯାଆନ୍ତି । ମୂଳପୋଛ କରିବ ତ ନିତି ଅଭିଯାନ ଚଳାଅ । ଦୁଇଚାରିମାସ ଧରି ଅବିରାମ ସଂଗ୍ରାମ ଚଳାଅ । ଦୟାମାୟା ମନରୁ ପୋଛି ଆଳସ୍ୟକୁ ଦେହରୁ ଛାଡ଼ି ଲାଗିପଡ଼, ଦେଖିବ ଦୁଇ ଚାରିଟା ମାସରେ ତୁମେ ବିଜୟୀ ଶ୍ରୀମଣ୍ଡିତ ହୋଇ ବସିଛ । ଉଃ-ଆଃ ।"

ମଂତ୍ରୀଙ୍କୁ ନତମସ୍ତକରେ ନିରୁତ୍ତର ହେବାର ଦେଖି ଜଣେ ଆଗଚଳା ଦରବାରିଆ କହି ପକାଇଲା—"ମଣିମା ! ଏ ରକ୍ତଖିଆ ବ୍ୟବ-ସାୟୀଗୁଡ଼ାଙ୍କୁ ମଂତ୍ରୀ ଯଦି ନ ପାରୁଛନ୍ତି ତେବେ ମୋତେ କ୍ଷମତା ଦିଅନ୍ତୁ, ସମସ୍ତଙ୍କୁ ନିପାତ କରିଦେବି, ସମସ୍ତଙ୍କୁ ପକଡ଼ି ନିକଟତମ ବଣ୍ଟାଖୁଣ୍ଟରେ ଫାଶି ଦେଇଦେବି ।

ଆଉ ଜଣେ ତା କଥାରେ ବାଧାଦେଇ କହିଲା, "ହେଃ ଓଲୁ କୋଉଠିକାର, ମଣିମା କଅଣ ବ୍ୟବସାୟୀମାନଙ୍କ କଥା କହୁଛନ୍ତି ! ସେ କ'ଣ ରଗିଉଠୁଛନ୍ତି ପୁଞ୍ଜିପତି ମହାଜନମାନଙ୍କ ଉପରେ । ଏଗୁଡ଼ାକ ଲୋକଙ୍କୁ ଶୋଷି ଶୋଷି ଶେଠା କରିଦେଲେଣି, ଅଥଚ ଏଣେ ମଣିମାଙ୍କୁ ଠିକ୍ ଠିକ୍ ଆୟକର ଦେଉ ନାହାନ୍ତି; ମଣିମାଙ୍କ କେତେ ଲୋକସାନ୍ ହେଉଛି । ସେଇଥିଲାଗି ପ୍ରଭୁ 'ଉଃ, ଆଃ, ଇସ୍, ଭାଷୁଛନ୍ତି ।'

ଆଉ ଜଣେ ତାକୁ ବାଧାଦେଇ କହିଲେ—"ହଉ ହଉ ରଖ ତମ ପଣ୍ଡିତପଣିଆ । ହାଇରେ ଏତିକ ବୁଝିପାରୁ ନ ପ୍ରଭୁ ଅଲକ୍ଷଣା ଖାଦ୍ୟ ଅପମିଶ୍ରଣକାରୀଙ୍କ କଥା କହୁଛନ୍ତି । ଅଳପେଇସେ ସମସ୍ତଙ୍କ ଦାନାରେ

ଧୂଳଦେଲେ । ଗୁଣ୍ଡଳରେ ଗୋଡ଼, ତେଲରେ ଅଗସ୍ତ, ଘିଅରେ ଧୂଷୁର-ଚର୍ବି, ଦୁଧରେ ଗୁଣ୍ଡଳମଣ୍ଡ, ଅଟାରେ ଖଡ଼ିଚୂନା, ଚିନିରେ କାଚଚୂନା, ଲୁଣରେ ବାଲି ମିଶେଇ ଦେଶଟାକୁ ନଷ୍ଟ କରିଦେଲେ, ଜାତିଟାକୁ ରୋଗୀ କରିଦେଲେ । ରାଜ୍ୟର ମେରୁଦଣ୍ଡକୁ ଭାଙ୍ଗିଦେଲେଣି । ସେ ସବୁ ଖାଇବା ଫଳରେ ଖୋଦ୍ ମଣିମାଙ୍କ ଶ୍ରୀପେଟକୁ ପୀଡ଼ା ହେଉଛି । ସେଇଥିଲାଗି ସେ ସିନା 'ଉଃ, ଆଃ, ଇସ୍'—

କଥା ନ ସରୁଣୁ ଆଉଜଣେ କହି ପକେଇଲେ—"ଇଏ ଭୂସ୍-ପଣ୍ଡିତେ କାହିଁଥିଲେ ଧାଇଁ ଆସିଲେ । ହଇହୋ ତୁମ ମୁଣ୍ଡରେ ଏତିକ କଅଣ ପଶୁନି ଯେ ମଣିମା ଛତର ଘୁଷଖୋରଗୁଡ଼ାଙ୍କ କଥା କହୁଛନ୍ତି— ବଦମାସଗୁଡ଼ାକ ଦେଶସାରା ମାଡ଼ିଗଲେଣି । ଏଗୁଡ଼ାକ ଏଡ଼େ ବେପରୁଆ ହୋଇଗଲେଣି ଯେ ଶତ୍ରୁ ଯଦି ଦଶ ପଇସିରୁ ଦି'ଟା ଏ ଦଳରୁ କାହା ହାତରେ ଗୁଞ୍ଜିଦେବ, ତେବେ ସେ ରାଜ୍ୟ ପ୍ରବେଶ ଦ୍ୱାରର କଞ୍ଚିକାଠିଟା ଶତ୍ରୁ ହାତକୁ ବଢ଼େଇଦେବ । ଏଇ ଗୁରୁତର ବିଷୟ ଭାବି ମଣିମା ଏମିତି ବ୍ୟସ୍ତ ହେଉଅଛନ୍ତି । ଏତିକ ତମ ମୁଣ୍ଡରେ ପଶିପାରୁନି ?

କୁଆଡ଼ରୁ ପାଣି କୁଆଡ଼େ ଗଲିଗଲା ଦେଖି ମନ୍ତ୍ରୀ ମୁଣ୍ଡରେ ହାତ-ଦେଇ ବସିପଡ଼ିଲେ । ଆଉ ସମ୍ଭାଳି ହୋଇ ନ ପାରି ରାଜା ପାଟିକଲେ— "ଦେଖୁଛି ସବୁ ମହାପଣ୍ଡିତଯାକ ଏଇଠି ରୁଣ୍ଡ ହୋଇଛ । ମୋତେ ତ ଏଠି ଘୁରପୋକଗୁଡ଼ାକ ଗାଦିରେ ବସେଇ ଦେଉ ନାହାନ୍ତି, ଆଉ ତୁମ୍ଭେ-ମାନେ କଅଣ ଯେ ଠଉରେଇ ନେଉଛ ତା'ର ତ କିଛି ଠିକଣା ନାହିଁ । ଅବଶ୍ୟ ତୁମ୍ଭେମାନେ ଯେଉଁମାନଙ୍କୁ ଚିହ୍ନେଇଲ ସେମାନେ ବି ଘୁର-ପୋକଙ୍କ ଠାରୁ କମ୍ ହାନିକାରକ ନୁହନ୍ତି, ଏ ଘୁରପୋକଙ୍କ ପରି ସେମାନେ ପ୍ରବଳ ହୋଇଉଠିଲେ ମୋର ଗାଦିରେ ବସିରହିବା ବି କଷ୍ଟକର ହେବ । ଉଠିଯିବାକୁ ବାଧ୍ୟ ବି ହୋଇପାରେ, ଭିତର ଅବସ୍ଥା ଏମିତି । ତେଣେ ବାହାରେ ଝୁଙ୍ଗ୍ ଝୁଙ୍ଗ୍ ଶୁଭୁଛି । କେତେବେଳେ ଯେ ଲାଇଚୁଙ୍ଗ୍ ମୋ ଉପରକୁ କୁଦିପଡ଼ିବେ ତାର କିଛି ଠିକଣା ନାହିଁ । ଏପରି ସ୍ଥଳେ କ'ଣ କପରି କରାଯିବ ତାହା ଏକ ଚିନ୍ତାର ବିଷୟ ହେଲାଣି । ହଇହୋ ମଂତ୍ରୀ, ଏପରି ଚୂପ୍‌ହୋଇ ବସିଲେ ହେବ କିପରି ? ଆରେ ସ୍ୱାକୁ ଟିକଏ ଧଣବଟି ।"

ମନ୍ତ୍ରୀ ପାଖକୁ ଯାଇ ନଇଁପଡ଼ିଲେ ଓ ରାଜାଙ୍କ ରକ୍ତ ପିଇ ଝିଙ୍କାଫଳ ହୋଇଥିବା ଗୋଟାଏ ସଇକାର ଛୁରପୋକ ମାଡ଼ିବସି ଗାଢ଼ିଉପରୁ ଉଠେଇ ଆଣିଲେ ଓ ପଦାକୁ ନେଇ ମକଚିଦେଲେ ।

ରାଜା ପୁଣି କହିଲେ, "ହଇହେ ତୁମ୍ଭେମାନେ କଅଣ ଭାବୁଛ ? ଲାଇ-ଭୁଙ୍ଗ ଫଉଜ ଧରି ମାଡ଼ ଆସିଲେ ଆମେ କଅଣ କରିବା ? ଆମର ଭିତର ଅବସ୍ଥା ଯେତେବେଳେ ଏମିତି ।'

ଦରବାରିଆମାନେ ସାରଦର୍ପରେ ଫାଟିପଡ଼ିଲେ । ଚଢ଼ାପଡ଼ା ହୋଇ ଆସ୍ଫାଳନ କରିବାକୁ ଲାଗିଲେ । ଜଣେ କହିଲା—'ମହିମା ! ନିଶ୍ଚିନ୍ତ ରହନ୍ତୁ । ଏ ଦେହରେ ଟୋପାଏ ଟୋପାଏ ରକ୍ତଥିବା ପର୍ଯ୍ୟନ୍ତ, ଏ ନାକ ବାଟେ ଶେଷ ନିଶ୍ୱାସ ଯିବା ପର୍ଯ୍ୟନ୍ତ ଲାଇଭୁଙ୍ଗଙ୍କୁ ଏ ରାଜ୍ୟରେ ପାଦ ପକାଇ ଦେବନି ଦେବନି ଦେବନି ।'

କିଏ କହିଲା—"ସେ ମୂର୍ଖ ବୋଧହୁଏ ଭୁଲିଗଲାଣି ଯେ ଆମେ ରାଣାପ୍ରତାପ, ଶିବାଜୀଙ୍କ ବଂଶଧର । ଫୁ କରି ଉଡ଼େଇଦେବୁ, କଅଣ ବୋଲି ପାଇଛି କି ଆମକୁ ।"

ଜଣେ କହିଲା, "ସେଇଟା ମୁଣ୍ଡରେ ପେଗ୍ଲ ବସିଲାଣି । ଫୁଲୁ ଫୁଲୁ ହେଉଛି, ଆମ ଉଇଲସନ ଓ ନିକସନ ଭାଇନାଙ୍କ ପାଖେ ବ୍ରହ୍ମବାଣ ଥିବା କଥା ବେଟାକୁ ମାଲୁମ ନାହିଁ । ହ'ଭାଇନାଙ୍କ ଠାରୁ ହ'ଟା ବାଣ ମାଗିଆଣି ଛେଚିଦେଲେ ବୋପାକୁ ମଉସା ଡାକିଛୁଡ଼ ପଳାଇବ । ଆସୁ ଆସୁ, ଆଚ୍ଛା କରି ଚେଙ୍କଟାଏ ପାଇଯିବ ।'

ଆଉ ଜଣେ କହିଲା—"ମହିମା । ତାର ଯଦି ଶନିସପ୍ତା ପଡ଼ିବ ତେବେ ସେ ଆସିବ । ଯଦି ସେ ଆସେ ପ୍ରଭୁ ମୋତେ ଟିକିଏ ଆଖିଠାରରେ ଇସାରା ଦେଇଦେବେ, ମୁଁ ଯଦି ତା' ସେନାପତିର ନାକଟାକୁ କାଟି ନ ଆଣିଦିଏ, ତେବେ ମୋ ନାଆଁରେ ନଅଟା କୁତା ପାଳିବେ ।"

ଆଉ ଜଣେ କହିଲା—'ମହିମା, ଯେତେବେଳେ ତା'ର ଛକାପଞ୍ଝା କଥାଟା ସଭାରେ ପଡ଼ିଗଲାଣି, ସେତେବେଳେ ଆଉ ଆମର ଅପେକ୍ଷା

କହିବାର ନୁହେଁ । ତୁମ୍ଭ ଆଜ୍ଞା ହେଉନ୍ତୁ ଆମେ ଆଗରୁ ସେ ତା' ରାଇଜରେ ପଶି ପାରିଲେ ମାଡ଼ ଚଢ଼େଇଦେବା । ସେ ଜାଣିପାରୁ ଆମେ କେମିତି ମରଦପିଲା । ମାଡ଼ଖାଇ ପାରିଲା ପରେ ଆତ୍ମରକ୍ଷା ପାଇଁ ମାଡ଼ ଚଢ଼େଇବା ଭୀରୁଙ୍କ କାମ ।

ରାଜା ଖୁସି ହୋଇଯାଇ କହିଲେ—'ବାସ୍ ବାସ୍ ଖୁବ୍ ହୋଇଛି, ଆଜି ମୋର ଚିନ୍ତା ରହିବ ନାହିଁ । ତୁମମାନଙ୍କ ପରି ତେଜୀ ଦରବାରୀଆ-ମାନେ ଥାଉ ଥାଉ ମୁଁ ମିଛରେ କାହିଁକି ଏତେ ଚିନ୍ତା କରିବି ?

ତୁମ୍ଭେମାନେ ଶୁଣିଲେ ଆଶ୍ଚର୍ଯ୍ୟ ହେବ ମୁଁ ଏପରି ମୋଟେ ଭାବି-ନଥିଲି । ଏହା ଏକ ଆଶ୍ୱାସନାର ବିଷୟ । ଉଃ, ଆରେ ଏଇଟାକୁ ଧରିବଟି ।

ଜଣେ ଧାଇଁଯାଇ ଗୋଟାଏ କୋଳଥିଆ ଘୁରପୋକ ରାଜାଙ୍କ ଲୁଗା ଭିତରୁ ଉଠେଇ ଆଣିଲା । ତା'ପରେ ରାଜ୍ୟସାରା କିପରି ଘୁରପୋକ ନିପାତ ହେବେ ତାର ମସୁଧା ଚାଲିଲା । ଦରବାର ନିମେ ମଜଗୁଲିଆ ହୋଇଉଠିଲା ।

ଠିକ୍ ଏତିକିବେଳେ ଧଇଁସଇଁ ହୋଇ ଗୋଟାଏ ପାଇକ ଗୋଟାଏ ମୁଦା ବାଣ୍ଡିଲ ଆଣି ରାଜାଙ୍କ ଆଗରେ ଲମ୍ବହୋଇ ଗୋଡ଼ତଳେ ପଡ଼ିଗଲା । ତା'ପରେ ଉଠି ରାଜାଙ୍କ ହାତକୁ ବଢ଼ାଇଦେଲା । ରାଜା ତାକୁ ଖୋଲି ପଢ଼ିବାମାତ୍ରେ ତାଙ୍କ ହାତ ଥରିଲା । ବାଣ୍ଡିଲଟା ତଳକୁ ଖସିପଡ଼ିଲା । ରାଜା ଖନେଇ ଖନେଇ କହିଲେ "ମନ୍ତ୍ରୀ ! ଏଇଟାକୁ ଧର ।"

ମନ୍ତ୍ରୀ ତରବରରେ ବାଣ୍ଡିଲଟା ଉଠେଇ ପଢ଼ିଗଲେ । ତା'ପରେ ଗମ୍ଭୀର ହୋଇଯାଇ ସମସ୍ତଙ୍କୁ ସମ୍ବୋଧନ କରି କହିଲେ—"ବନ୍ଧୁଗଣ ! ଘୋର ସଙ୍କଟର ସମୟ ଆସିଲା । ସମସ୍ତେ ପ୍ରସ୍ତୁତ ହୋଇଯାଅ । ଲାଇ-ଭୁଙ୍ଗ ଉତ୍ତରପଟ ମେଘନାଦ ପାଚେରି ଡେଇଁ ଆମ ରାଜ୍ୟରେ ପଶିଗଲେଣି । ଜଣେ ବଦ୍‌ରାଗୀ ମାଷ୍ଟର କ୍ଲାସ ଭିତରେ ପଶିଗଲା ମାତ୍ରେ ଛୁଆଙ୍କ ଗଣ୍ଡ-ଗୋଳ ଯେପରି ହଠାତ୍ ଥମିଯାଏ, ଦରବାରଟା ଠିକ୍ ସେହିପରି ଚୁପ

ପଡ଼ିଗଲା । କାହାରି ପାଟିରେ କଥା ନାହିଁ । ରଜା ଶେଷରେ ଅତି କଷ୍ଟରେ କହିଲେ—"ତୁମ୍ଭେମାନେ ଏଥର କାମରେ ଲାଗିଯାଅ । ତୁମ୍ଭମାନଙ୍କ ଉପରେ ମୁଁ ପୂରା ଭରସା ରଖିଛି ।"

ଏତିକ ଶୁଣିବାମାତ୍ରେ ଦରବାରିଆଙ୍କ ଭିତରୁ ବାରପଣ "ଆମେ ଯାଉଛୁ ରସଦ ସଂଗ୍ରହ କରିବୁ । ଯୁଦ୍ଧରେ ବହୁତ ଟଙ୍କା ଖର୍ଚ୍ଚ ହେବ । ଆଗ ସେହି କାମରେ ଲାଗିଯିବା" କହି ଭୂଦ୍ୱାସ ସେଠାରୁ ପଳେଇଗଲେ । ବାକି ଋଣପଣ ଭିତରୁ ଦୁଇ ତିନିଜଣ କହିଲେ—"ମଣିମା ଏ ଯୁଦ୍ଧପାଇଁ ବହୁତ ସୁନା ଦରକାର । ବିଦେଶୀ ବେପାରୀମାନେ ସୁନା ନ ନେଲେ ନଳ, ଫସି ଦେବେ ନାହିଁ । ମଠ ମହନ୍ତ ଠାକୁର ବାଡ଼ମାନଙ୍କରେ ମହଣ ମହଣ ସୁନା ରହିଛି । ଆମେ ଯାଉଛୁ ତୁମ୍ଭଙ୍କ ଆଜ୍ଞା କହି ସେ ସୁନା ସବୁ ବୋହିଆଣିବୁ ।" ଏତିକ କହିସାରି ରଜାଙ୍କ 'ହଁ ନାହିଁ'କୁ ଅପେକ୍ଷା ନ କରି ସେମାନେ ଝଡ଼ପରି ସେଠାରୁ ବାହାରି ପଳେଇଲେ । ବାକିତକ ଥିଲେ ସବୁ ବଡ଼ ବଡ଼ ପେଟିଆ ମୁଣ୍ଡରେ ତାଙ୍କର ପଗଡ଼ି । ସେମାନେ କିଛି ସମୟ ନିଜ ଭିତରେ ଫୁସର ଫାସର ହେଲେ । ତା'ପରେ ତାଙ୍କ ଭିତରୁ ଜଣେ ବୟସ୍କ ଲୋକ କହିଲା—'ମଣିମା, ଏ ଯୁଦ୍ଧରେ ମାଲ ଯୋଗେଇ ଠିକ୍ ଠିକ୍ ନ ହେଲେ ବଡ଼ ଖରାପ ହେବ । ଦୁସ୍‌ମନମାନେ ମାଲଗୁଦାମରୁ ସବୁ ମାଲ କିଣିନେଇ ଅପନା ଅପନା ଘରେ ମହଜୁଦ କରିଦେବେ । ଆମ ଫଉଜ ପାଇଁ ଠିକଣାବେଳେ ମାଲ ମିଳିବ ନାହିଁ । ମାଲଗୁଦାମରେ ମାଲ କିଣି ଚଟାପଟ ବନ୍ଦ ନ କଲେ ପିଛେ କିଛି ବି ମିଳିବ ନାହିଁ । ହାମେ ଅଭି ମାଲଗୁଦାମକୁ ବାହାରିଲୁ ।' ଏହା କହି ସେମାନେ ଦରବାର ଗୃହ ଖିଦଖାଦ ହୋଇ ପଳେଇଗଲେ । ସବୁ ଦରବାରିଆ ପଳେଇବା ଦେଖି ରଜା କହିଲେ, —'ହଇହୋ ମନ୍ତ୍ରୀ, କଥାଟା ଭଲ ଜଣୁନି । ଆହେ ଯାଉଛୁ ସୈନ୍ୟ ସଂଗ୍ରହ କରିବା ବୋଲି କାହାରି ତୁଣ୍ଡରୁ ତ ବାହାରିଲା ନାହିଁ, ଯେଉଁଟା କି ଯୁଦ୍ଧର ମୂଳ କଥା । ତା'ପରିବର୍ତ୍ତେ ଆମ ବୀରମାନେ ବାହାରିଲେ ରସଦ ଆଦାୟ କରିବେ, ସୁନା ସଂଗ୍ରହ କରିବେ, ଆଉ ମାଲ-ଗୁଦାମରେ ମାଲମତା ସବୁ ରୁପିଦେବେ । ଦେଖୁଛି ଏଗୁଡ଼ାକ ଦେଇ ଯୁଦ୍ଧ ଜିତିହେବ ନାହିଁ । ଆଉକୁ ତୁମେ ନିଜେ ସବୁ ଯୋଗାଡ଼ କର ଏଣିକରେ ଦରବାର ଭାଙ୍ଗିଲା ।

ଘୃତ ପାଞ୍ଚଦନ ପରେ ରଜା ମନ୍ତ୍ରୀଙ୍କୁ ଯୋଗାଡ଼ ଯନ୍ତ୍ରର ତାଜ ଦେହେଦୂର ଗଲା ବୋଲି ପଗ୍ଭରିବାରୁ ସେ କହିଲେ—"ମଣିମା ଯୁଦ୍ଧ ତାଜ ବିଲ୍‌କୁଲ ନାହିଁ କହିଲେ ଚଳେ, ଓଲଟି ସନ୍ନିପାତ ରୋଗୀପରି ତାଜ ଖସିବାରେ ଲଗିଛି । ଗୋଟାଏ ଉପାୟ ମୁଁ ପାଅଛି । ଆମ ରାଜ୍ୟରେ ଗଳିକନ୍ଦିରେ କବିମାନେ ସାଲୁସାଲୁ ହେଉଛନ୍ତି । ସେମାନଙ୍କୁ ଯଦି ଗ୍ଭମୁ ଆଜ୍ଞା କରନ୍ତେ, ତେବେ ସେମାନେ ଯୁଦ୍ଧ କବିତା ଲେଖି ଲୋକମାନଙ୍କୁ ଦିଅନ୍ତେ । ତେଣିକି ଲୋକେ ଝିଙ୍କପୋକ ପରି ଘାଲୁ ଘାଲୁ ହୋଇ ହାତ-ହତିଆର ସହ ଯୁଦ୍ଧ ଭୂଇଁକୁ ବାହାରି ଆସନ୍ତେ । ଶତ୍ରୁ ବନ୍ଧୁଆଡ ମାଡ଼ ଖାଇଲାପରି ଗୁଟିପିଟି ହୋଇ ପଳାନ୍ତା ।"

ରଜାଙ୍କ ମନକୁ କଥାଟା ଷୋଳଅଣାଅଧିକେ ପାଇଗଲା । ସଙ୍ଗେ ସଙ୍ଗେ କବିମାନଙ୍କ ପାଖକୁ ପରୁଆନା ପଠାଇବାକୁ ଠିକ୍ କରାଗଲା । ବଚ୍ଛା ବଚ୍ଛା କବିମାନଙ୍କ ପାଖକୁ ପଠାହେବ । ମନ୍ତ୍ରୀଙ୍କୁ ରାଜ୍ୟଟି ସାରା କବିମୟ ଦେଖାଗଲା । ବଚ୍ଛାବଚ୍ଛି କରିବାକୁ ବୁଢ଼ା ବୁଢ଼ା କବି ଦି' ଗ୍ଭରିଜଣଙ୍କୁ ଡକାଗଲା । ସେମାନେ କବି ବଚ୍ଛା ନାଁ ଶୁଣିବାମାତ୍ରେ ମନ୍ତ୍ରୀଙ୍କ ଗୋଡ଼ଧରି କାତର କଣ୍ଠରେ ରଡ଼ି ଗ୍ଭଡ଼ିଲେ, "ଆଜ୍ଞା ଆମକୁ ବଞ୍ଚାନ୍ତୁ । ଆମ ପିଠିରେ ଆଉ ଗ୍ଭଲ ରହିବ ନାହିଁ । ଭୁଲ ଚୂକ୍‌ରେ ଯଦି କାହାର ନା ବଚ୍ଛା ନ ହୋଇ ରହିଯିବ, ତେବେ ସେ ସାଙ୍ଗେ ସାଙ୍ଗେ ଆମକୁ ତା ପୁଅର ମାମୁଁ ବନେଇ ଠେଙ୍ଗୁଣିରେ ପିଠି ସିଧା କରିଦେବ । ଆଜ୍ଞା ବହୁଥର ଏମିତି ହେଲାଣି । ଆଉ ଏ ଭୁଲ କାମ କେବେହେଲେ କରିବୁ ନାହିଁ ।"

ମନ୍ତ୍ରୀ ବଡ଼ ହଇରାଣରେ ପଡ଼ିଲେ । ବ୍ୟକ୍ତିଗତ ଭାବରେ କାହାକୁ ଚିଠି ନ ଦେଇ ଖବର କାଗଜରେ ଏକ ଅନୁରୋଧପତ୍ର ଛପେଇ ଦେଲେ । ସପ୍ତାହେ ଯାଇଛି କି ନାହିଁ ମନ୍ତ୍ରୀ ହାହା ହାହା ଡାକ ଗ୍ଭଡ଼ିଲେ । ତାଙ୍କ ଘର ଦ୍ୱାର କବିତାରେ ଖୁନ୍ଦିହୋଇ ଉବୁକି ଉଠିଲା । ତାଙ୍କୁ ସେଗୁଡ଼ାକ ବଚ୍ଛାବଚ୍ଛି କରିବାର ସମୟ କାହିଁ ? ସବୁ ସ୍କୁଲ କଲେଜର ଆଧୁନିକ ଜମ୍ବୁଦ୍ୱୀପ ଭାଷା ଶ୍ରେଣୀ ସବୁ ବନ୍ଦ କରିଦେଇ ତହିଁର ଅଧ୍ୟାପକ, ଶିକ୍ଷକ ତଥା ଗ୍ଭତ୍ର-ମାନଙ୍କୁ ବଚ୍ଛାବଚ୍ଛି କରି ହଜାରେ ପୃଷ୍ଠିଆ ଖଣ୍ଡେ ବହିର ପାଣ୍ଡୁଲିପି ପ୍ରସ୍ତୁତ କରିବାକୁ ହାବୁଡ଼େଇ ନିଜେ ଅନ୍ୟ କାମକୁ ପଳେଇଗଲେ ।

ସପ୍ତାହକ ବାଦ ରାଜା ଓ ମଂତ୍ରୀ ଦୁହେଁ ପାଣ୍ଡୁଲିପି କାମ ଦେଖି-ବାକୁ ଆସିଲେ । ଗୋଟି ଗୋଟି କରି ଦେଖିବାକୁ ଧୈର୍ଯ୍ୟ ନ ଥିଲା । ରାଜା ମୁଖ୍ୟ ବସ୍ତୁଳକୁ ବଛାବଛି କରିବା ବିଷୟରେ ଠିକେ ଠିକେ କହି ଯିବାକୁ କହିଲେ, ମୁଖ୍ୟ ବସ୍ତୁଳା କଣ୍ଠ ସଫା କରି ଆରମ୍ଭ କଲେ—"ମହିମା ଶୁଣିବା ହୁଅନ୍ତୁ । ସମୁଦାୟ କବିତାର ୮° ପ୍ରତିଶତ ଉଗ୍ର ଅଛି । ସବୁର ସାରମର୍ମ ହେଉଛି ଏକ । ଅର୍ଥାତ କବି ଶତ୍ରୁର ବଂଶ ନିପାତ କରିବେ । ତାକୁ ମୁଦ୍‌ଗରରେ ଛେଚିବେ, ତା ପେଟ ଚିରି ଅନ୍ତବୁଜୁଳା କାଢ଼ି ପକେଇବେ । ଦ'ଗୋଡ଼କୁ ଫାଡ଼ିଦେବେ । ତାତି କଡମଡ଼ ହେଉଥିବା ତେଲ କରେଇରେ ତାକୁ ପକୁଡ଼ି ପକେଇଲା ପରି ପକେଇବେ । ଶତ୍ରୁର ରାଜ୍ୟକୁ ଶ୍ମଶାନ କରିଦେବେ ।

୫ ପ୍ରତିଶତରେ ଶତ୍ରୁ ଉପରେ ଖାଲି ଗାଳିବର୍ଷଣ ହୋଇଛି । କିରୁତା ଗାଳିଛଡ଼ା ଆଉ କିଛି ନାହିଁ । ସେ ଗାଳିକୁ ଶୁଣିଲେ ଆମ ରାଜ୍ୟର ସର୍ବଶ୍ରେଷ୍ଠ କଳିହୁଡ଼ି ବିଧବା ରମଣୀ ମଧ୍ୟ ନିଜକୁ ପରାସ୍ତ ମନେକରି ରାଜ୍ୟ ଛାଡ଼ି ଧଳେଇବ । ହା ତୋ ମାଇପ ରାଣ୍ଡି ହେଉ, ହା ତୋ ପୁଅକୁ କୁମ୍ଭୀର ଖାଉ, ହା ତୋ ଉଦରେ ବିଲୁଆ ଭୋଉଁ, ହା ତୋ ସାତପୁରୁଷ ନର୍କରେ ପଡ଼ନ୍ତୁ ଆଦି ହେଉଛି ଏଥିରେ ମୁଖ୍ୟଗାଳି । ଦୁର୍ବାସାଙ୍କ ପରି ଅଭିଶାପ ମାଧ୍ୟମରେ ଏ କବିମାନେ କାମ ଚଳେଇ ନେବାକୁ ଚେଷ୍ଟା କରିଛନ୍ତି ।

୫ ପ୍ରତିଶତରେ ଆମ ରାଜ୍ୟର ଲୋକମାନଙ୍କୁ ନିଦରୁ ଉଠେଇବାକୁ ଚେଷ୍ଟା ହୋଇଛି । ବଡ଼ଭୋରକୁ ଜମିଦାରମାନଙ୍କ ନିଦ ଭାଙ୍ଗିବା ପାଇଁ ଯେମିତି କୀର୍ତ୍ତନ କରାଯାଏ, ଏ ଧରଣର କବିତା ସବୁ ଠିକ୍ ସେମିତି ହୋଇଛି । ସେ ସବୁରେ ମୋଟ ଉପରେ କୁହାଯାଇଛି—'ସେ ସୁପ୍ତ ସ୍ୱପ୍ନ ଓ ନିଦ୍ରା ତେଜ ଉଠ । ଶତ୍ରୁ ପରା ତୋ ସବୁଜ ଗାଲିଚ୍ଛ ଉପରେ ପାଦ ପକାଇଲାଣି । ଉଠିପଡ଼ । କାନଡେରି ତା ପାଦଧ୍ୱନି ଶୁଣ । ଧୀରେ ଅତି ଧୀରେ ସେ ପାଦଚାଳି ଆସୁଛି । ଆଉ ଡେରି କରନା ଉଠିପଡ ।'

୭ ପ୍ରତିଶତ କବି ଜନ୍ମଭୂମିର ବନ୍ଦନା ଗାଇଛନ୍ତି ଆଉ ଏପରି ଜନ୍ମଭୂମିକୁ ଯେଉଁ ଶତ୍ରୁ ଅପମାନ ଦେଉଛି ତାକୁ ହାକିମ ତଳିଆ କର୍ମ-ଗ୍ଲାରୀକୁ ବହିଷ୍କାର କରିଦେବାର ଧମକ ଦେଲାଭଳି ଧମକେଇଛନ୍ତି ।

ବାକି ପ୍ରଣ୍ଡଶତ ଠାକୁର ଠାକୁରାଣୀ ଭଗବାନ ଇତ୍ୟାଦିଙ୍କୁ ମୂର୍ଗଣି ସ୍ତୁତି କଲାପରି ବିକଳରେ ଡାକପକେଇଛନ୍ତି—ଜଗନ୍ନାଥଙ୍କୁ ଅନୁରୋଧ କରିଛନ୍ତି ସେ ଯେମିତି ସୁଦର୍ଶନ ପେଶିଦେଇ ଶତ୍ରୁକୁ ଏକା-ବେଳକେ ମୂଳପୋଛ କରିଦେବେ । ତାଙ୍କ ପାଖରେ ଅଭିଯୋଗ କରିଛନ୍ତି ଯେ, ସେ ବଡ଼ଭାଇ ବଳଦେବଙ୍କୁ ସଙ୍ଗରେ ନେଇ କାଞ୍ଚିରାଜାଙ୍କୁ ପାଣି ପିଆଇ ଦେଲେ । ଏତେବେଳେ ଶତ୍ରୁ ବିରୁଦ୍ଧରେ ପୁଣି ଘୋଡ଼ା ନ ମିଳିଲେ ପଛେ ଦୁଇଟା ସ୍କୁଟର ଦିଆଯିବ, କିନ୍ତୁ ଯୁଦ୍ଧକ୍ଷେତ୍ରକୁ ଯାଇ ଶତ୍ରୁକୁ ନିପାତ କରିବାକୁ ହେବ । ନ ହେଲେ ତାଙ୍କଘର ବଡ଼ଦେଉଳର କଥା ସରିଯିବ । ଲାଇ-ଭୁଙ୍ଗ୍‌ର ନଜର ଆଗ ମନ୍ଦିର ଉପରେ ପଡ଼ିବ । ତା’ ନଜରରେ ଦେଉଳଗୁଡ଼ାକ ଅଫିମକାରଖାନା । ଏ କବିମାନେ ବଡ଼ ଚାଲାକ । ଜଗନ୍ନାଥଙ୍କୁ ଭୟ ଦେଖାଇ ତାଙ୍କର ହାତରେ ଶତ୍ରୁ ଦଳନ କାମଟା କରେଇ ନେବାକୁ ବସିଛନ୍ତି । ଅବଶ୍ୟ ଗୋଟାଏ କବିତା ଦେଖିଲୁ ମନ୍ଦ ହୋଇନି । ବେଶ୍ ତୁମ ଟାଙ୍କୁରେଇ ପାରୁଛି । ତାକୁ କିଏ ଜଣେ ବ୍ଲାଷ୍ଟ୍ ଫର୍ନେସ କବି ଲେଖିଛନ୍ତି । ଯେଉଁ ଧରଣର କବିତା ସବୁ ଛପେଇବାର ଆଜ୍ଞା କରିବେ ଆମେ ସେଗୁଡ଼ିକ ଛାପିବୁ ।

ଏ ସବୁପାକ ଛାପି ବହିକରି ରାଜ୍ୟସାରା ବାଣ୍ଟି ଦେବାକୁ ରାଜା ଆଜ୍ଞାଦେଲେ । ଶତକଡ଼ା ୫୧ ଭାଗ ତାଙ୍କର ବିଶ୍ୱାସ ହେଉଥାଏ ଯେ କବିତାଗୁଡ଼ିକ ରାଜ୍ୟରେ ଚହଳ ପକାଇ ପାରିବ ଓ ଲୋକେ ଦେଶରକ୍ଷା ପାଇଁ ବହୁ ସଂଖ୍ୟାରେ ସୈନ୍ୟ ବିଭାଗରେ ପଶିବେ । ଶୀଘ୍ର କାମ ସାରିବାକୁ ତାଗିଦ୍ କରିଦେଇ ରାଜା ଚାଲିଗଲେ ।

ସୀମାନ୍ତରେ ଯୁଦ୍ଧ ଘମାଘୋଟ ଲାଗିଗଲା । ଲାଇଭୁଙ୍ଗ୍‌ର ସୈନ୍ୟମାନେ ରାଜ୍ୟ ଭିତରକୁ ପଶିପାରୁ ନ ଥାନ୍ତି । ରାଜା ଦେଖିଲେ ଏତିକବେଳିଆ ଆଉ କିଛି ସୈନ୍ୟ ଯୁଦ୍ଧକ୍ଷେତ୍ରକୁ ପଠେଇ ପାରିଲେ ଶତ୍ରୁ ଛେରମୂତ ଛାଡ଼ି ପଳାନ୍ତା । ଯୁଦ୍ଧ ଚଟାପଟ ଶେଷ ହୋଇଯାନ୍ତା । ସୈନ୍ୟ ସଂଗ୍ରହ ହାକିମଙ୍କୁ ଡକାଇ ସଂଗ୍ରହ କେତେଦୂର ଗଲା ପଚାରିଲେ ।

ହାକିମ କହିଲେ, “ମଣିମା କେହି ଗୋଟିଏ ସୈନ୍ୟ ହେବାକୁ ବାହାରୁନି । ଯେଉଁ କବିତା ବହି ବଣ୍ଟା ହୋଇଥିଲା ତାକୁ ଲୋକେ ନିଜେ

ନ ପଡି ଆପଣା ଆପଣା ଅତୀତ, ବର୍ତ୍ତମାନ ଓ ଭବିଷ୍ୟତ ଭାର୍ଯ୍ୟାମାନଙ୍କୁ ଉପହାର ଦେଇଦେଲେ । ସେମାନେ ସେଗୁଡ଼ିକ ନିଜ ନିଜ ଛକିଆ ତଳେ ରଖି ରାତ୍ରରେ ସ୍ୱାମୀମାନଙ୍କୁ ପଢ଼ି ଶୁଣାଉଛନ୍ତି । କେଉଁଟା ବଢ଼ିଆଁ ହେଲା, କେଉଁଟା ନାକରା ହେଲା ସେଇଆ ଚର୍ଚ୍ଚା ହେଉଛି । ମୋଟ ଉପରେ ଯାହା ଆଶା କରାଯାଉଥିଲା ତାହା କିଛି ହେଲାନି ।"

ରାଜା ଏହା ଶୁଣି ବଡ଼ ଚିନ୍ତିତ ହୋଇ ପଡ଼ିଲେ । ତା'ପରେ ମନ୍ତ୍ରୀଙ୍କୁ ଆଜ୍ଞାଦେଇ କହିଲେ—"ଦେଖ ମଂନ୍ତ୍ରୀ ! କେହି ନ ଆସନ୍ତୁ କିଛି ଚିନ୍ତା ନାହିଁ । ଯେଉଁ କବିମାନେ ଏ କବିତା ସବୁ ଲେଖିଥିଲେ, ସେମାନେ ନିଶ୍ଚୟ ବଡ ତେଜା ଲୋକ, ସେଇ କବିମାନଙ୍କୁ ଡାକି ଆଣି ଯୁଦ୍ଧକ୍ଷେତ୍ରକୁ ପଠାଇବାର ବ୍ୟବସ୍ଥା କର । ସେମାନେ ଶୁଣିବାମାତ୍ରେ ଯୁଦ୍ଧଭୂଇଁକୁ ଖପ୍‌ଖାପ୍ ଡେଇଁ ପଡ଼ିବେ । ଯାଅ ଶୀଘ୍ର କାମରେ ଲାଗିଯାଅ ।"

ଚଉଦ ଦିନ ବାଦେ ମଂନ୍ତ୍ରୀଙ୍କ ଶୁଖିଲା ମୁହଁ ଦେଖି ରାଜା ପଚାରିଲେ—"କି ! କଅଣ ହେଲା ? କବିମାନେ ଯୁଦ୍ଧକୁ ଆସିଲେଟି ?"

ମଂନ୍ତ୍ରୀ ଶୁଖାମୁହଁ ତଳକୁ ପୋତି କହିଲେ, ମଣିମା ! ମାଇଆ ରୋଗଟା କବିଗୁଡ଼ାଙ୍କ ଦିହରେ ଚରିଗଲାଣି । ସମସ୍ତଙ୍କୁ ଡକାଗଲା ହେଲେ କେହି ନ ଆସି ଘରେ ଲୁଚିଲେ, ଆଉ ଖଣ୍ଡିଏ ଖଣ୍ଡିଏ ଦରଖାସ୍ତରେ ଯୁଦ୍ଧକୁ ଯିବାରେ ଅସାମର୍ଥ୍ୟର କାରଣ ଲେଖି ମୋ ପାଖକୁ ପଠାଇ ଦେଇଛନ୍ତି । ସବୁଠୁ ବେଶୀ ସଂଖ୍ୟକ କାରଣ ହେଉଛି ସେମାନଙ୍କ ଭାରିଯାମାନଙ୍କ ସାଢ଼େ ଆଠମାସ ଗର୍ଭ । ଘରେ ସେମାନଙ୍କର ଦେଖାରୁହାଁ କରିବାକୁ ଅନ୍ୟ କେହି ନାହାନ୍ତି । ଆଉ କେତେ ପେଟମରା ବେମାରୀରେ ଆକ୍ରାନ୍ତ ହୋଇ ଶଯ୍ୟାଶାୟୀ ହୋଇପଡ଼ିଛନ୍ତି । କିଏ ଲେଖିଛି ଧାନକଟା ସାରିଦେଇ ଆସିବ । କିଏ ଲେଖିଛି ତା ଝିଅ ପୁଅଟି ଝିଅ ପାରିଗଲେ ଯେ ଆସିବ । କାହାର ବୁଢ଼ୀମା ଶକ୍ତ ବେରାମ । କାହାର ଗୋଇଠି ଭାଙ୍ଗି ହୋଇଥିବାରୁ ସେ ଚାଲିପାରୁନି । ଜଣେ କବି କିନ୍ତୁ ଭାରି ହମ ହମ ହୋଇ ଆସିଥିଲେ । ତା ନାଁ ବ୍ଲାଷ୍ଟଫର୍ଣ୍ଣେସ୍ କବି । ତାଙ୍କୁ ଦେଖି ମୋତେ ହସ ମାଡ଼ିଲା । ଗୋଟାଏ ନଳିର ଓଜନ ଯେତେ ତା ଓଜନ ସେତେ ନୁହେଁ । ତା ଦିହପାକ ଚଞ୍ଚା ଚଞ୍ଚି କଲେ ଦୁଇ କଳେ ମାଉଁସ

ବାହାରବାଙ୍କ ନାହିଁ, ସେଥିରେ ପିମ୍ପୁଡ଼ି ତାର କାହିଁରେ କଣ । ସେଥୁ ଛୁଙ୍କି ଦେଲେ ଅଥଚ କଗୁଡ଼ ହୋଇପଡ଼ିବ । ତାକୁ ଫେରାଇ ଦେଲି । ଫେରି ଗଲାବେଳେ ବଚରା ଭଗବାନଙ୍କୁ ଗାଳି ଗୁଲଜ କରି କହି ଯାଉଥାଏ ଗୋଆ ହାଉଥିଲି ଯେ ଆମର ଲୋକ ମୋତେ ଫେରାଇଦେଲେ, ଏବେ ଯୁଦ୍ଧକୁ ବାହାରିଲି ଯେ, ଆମର ମଂତ୍ରୀ ମୋତେ ଠିକ୍ ସେହିପରି ଫେରାଇ ଦେଉଛନ୍ତି । ଏଇଟା ସେ ଜାଲମ୍ ଭଗବାନର ଫିସାଦ୍, ବଦମାସ ଭଗବାନର ଷଡଯଂତ୍ର । ୨୪ ଘଣ୍ଟିଆ ଚରମପତ୍ର ତାକୁ ଦିଆଯିବା ଉଚିତ ଇତ୍ୟାଦି ଇତ୍ୟାଦି—

ରାଜା ସବୁ ଶୁଣି କହିଲେ, ବୁଝିଲି ମଂତ୍ରୀ ! ଏବେ ମୁଁ ବୁଝିଲି ସେ ହଜାର ହଜାର କବଚା ଲୋକଙ୍କୁ ଚଢାଇ ପାରିଲି ନାହିଁ କାହିଁକି । କହିମାନେ ସେଗୁଡ଼ିକ ନାହିମୁଣ୍ଡାରୁ ସିନା କାଢ଼ିଥିଲେ ହୋଇଥାଆନ୍ତା । ଓଠମୂଳଆ କବଚାର ଜୋର ହେବ କୁଆଡ଼ୁ ?

—o—

# ରାଧାନାଥଙ୍କ କଥା

ଗବେଷକ ଉତ୍ତନ୍‌ଙ୍କୁ ଦାସେ ସମ୍ପାଦକମାନଙ୍କ କୁତ୍ସିତ ବ୍ୟବହାରରେ ମର୍ମାହତ ହୋଇପଡ଼ିଲେ । ପ୍ରଚଣ୍ଡ କୋପରେ ପ୍ରଜ୍ଜ୍ୱଳିତ ହୋଇ ସେ ମନେ ମନେ ସ୍ଥିର କଲେ—ନା ଏ ପ୍ରତ୍ୟେକ ସମ୍ପାଦକଙ୍କ ଉପରେ ଗୋଟିଏ ଗୋଟିଏ ହାତବୋମା ପକାଇ ଓଡ଼ିଶାଟାକୁ ନିଃସମ୍ପାଦକ କରାଇଦେବ । ଯେଉଁମାନେ ତାର ପ୍ରତିଭାଟାକୁ ଚିହ୍ନି ନ ପାରିଲେ ସେମାନେ ଥାଇ କେତେ ନ ଥାଇ କେତେ ! ଚଉଦ ତାଳ ପାଣି ସାତ ତାଳ ପଙ୍କ ତକଟି ଅଣନିଶ୍ୱାସ ହୋଇ ମୁଁ ଶାମୁକା ସଂଗ୍ରହ କରୁଛି, ତା ଭିତରୁ ଖୋଜି ଖୋଜି ପୁଣି କେତେ କଷ୍ଟରେ ମୁକ୍ତାଟିଏ ପାଉଛି । ସମ୍ପାଦକମାନଙ୍କର ଉଚିତ ହେଉଛି ସେମାନେ ମୋ ପାଖକୁ ଧାଇଁ ଆସି ମୋତେ ଖୋସାମଦ କରି ମୋଠାରୁ ସେ ମୁକ୍ତାଟିକୁ ନିଅନ୍ତେ, ଆଉ ଜନସାଧାରଣଙ୍କୁ ଦେଖାନ୍ତେ । ମୋତେ ଏହିପରି ଆହୁରି ଆହୁରି ମୁକ୍ତା ସଂଗ୍ରହ କରିବାକୁ ପ୍ରେରଣା ଓ ଉତ୍ସାହ ଦିଅନ୍ତେ । ମୋ ପେଟପାଟଣା କଥା ବି ବୁଝନ୍ତେ । ଏସବୁ କୁଆଡ଼େ ଗାଧୋଇଗଲା । ମୁଁ ଓଲଟି ମୋ ମୁକ୍ତାତକ ନେଇ ସେମାନଙ୍କ ପାଖକୁ ଯାଉଛି । ସେମାନଙ୍କୁ ପୁଣି ଖୋସାମଦ କରି ମୁକ୍ତାତକ ଜନସାଧାରଣଙ୍କ ପାଖରେ ପେଶ୍ କରିବାକୁ ଅନୁରୋଧ ଉପରେ ଅନୁରୋଧ କରି ପାଟି ଯୋକାଉଛି । ସେ ଅପଦାର୍ଥ ଗଜମୂର୍ଖଗୁଡ଼ାକ ତାକୁ ଦେଖି କହୁଛନ୍ତି କଅଣନା ଏଗୁଡ଼ାକ ଗୋଡ଼ି । ହଇରେ ତମ ବୋପା ଅଜା ଚଉଦ ପୁରୁଷରେ କେହି କେବେ ମୁକ୍ତା ଦେଖିଥିଲେ ନା ତୁମେ ଦେଖିଲ ? ହତଭାଗାଗୁଡ଼ାକ ଏଣ୍ଡ୍ରିନ୍ ଖାଇ ମରୁନ ! ଯିଏ ତୁମମାନଙ୍କୁ ସମ୍ପାଦକ କରେଇଲା ସିଏ ମଲାନି । ସର୍ବନାଶ ହୋଇଯାଉ ତୁମର । ତୁମମାନଙ୍କ ଠେଙ୍ଗା ବୋଲୁଅ ତୁମ ଉପରେ ପଡୁ ।

ଠିକ୍ ଏତିକିବେଳେ ରଘୁନାଥପ୍ରସାଦ ମହାପାତ୍ରେ ଉତ୍ତନ୍ତ୍ରିଙ୍କ ଘର ଭିତରକୁ ପଶି ଆସିଲେ । ଶେଷ କଥାତକ ତାଙ୍କ କାନରେ ପଡ଼ିଗଲା । ସେ ଦାସଙ୍କ ପାଖରେ ବସିଯାଇ କହିଲେ—"ଆହେ ତାହା ଉପରେ ତୁମର ଏ ପ୍ରଚଣ୍ଡ ରାଗ । ତୁମେ ଜଣେ ଗବେଷକ ହୋଇ ଶେଷରେ ତେଲ ବୋଲୁଅ ଉପରେ ଗବେଷଣା ଆରମ୍ଭ କଲଣି । ଇଏ ତ ବଡ଼ ଖରାପ କଥା । କାହା ଉପରକୁ ଫୋପାଡୁଛ, ତା ମୁଣ୍ଡରେ ନ ପଡ଼ି ସେଇଟା ଯଦି ଆଉ କାହା ମୁଣ୍ଡରେ ପଡ଼େ ତେବେ କଥାଟା ହବ କଅଣ ? ସେଗୁଡ଼ାକ ସବୁ ଉତ୍ପାତିଆଙ୍କ କାମ । ହଇ ହେ ତମେ ଜଣେ ଗବେଷକ ହୋଇ ଏ ସବୁ ଧନ୍ଦାରେ ମାତିଲ କାହିଁକି ? କାହା ଉପରେ ତେଲ ଫୋପାଡ଼ିବ ବୋଲି ସ୍ଥିର କରୁଥିଲ ?"

"ଆହେ ନାହିଁ ହେ ମୁଁ ନିଜେ ପକେଇବାକୁ ସ୍ଥିର କରୁ ନ ଥିଲି । ମୁଁ ଇଚ୍ଛା ପ୍ରକାଶ କରୁଥିଲି କି ଉତ୍ପାତିଆ ଛାତ୍ରମାନେ ସମ୍ପାଦକମାନଙ୍କ ଉପରକୁ ତେଲ ବୋଲୁଅ ଫୋପାଡ଼ନ୍ତେ ।"

'ଆହା ସେ ନିରୀହ ଜୀବମାନଙ୍କ ଉପରେ ଏତେ ରାଗ କାହିଁକି ? ସେମାନଙ୍କ ମଧ୍ୟରୁ କାହାର ଜଣକର ମୁଣ୍ଡ ଫାଟିଗଲେ ତୁମେ କଣ ତା ମୁଣ୍ଡର ଦହିତକ ସଂଗ୍ରହ କରି ନିଜ ମୁଣ୍ଡରେ ପୂରେଇବ ? ସେମାନଙ୍କର ଦୋଷ କଅଣ ?"

ଦାସେ ମହାପାତ୍ରଙ୍କୁ ଗୃହା ପକୁଡ଼ରେ ଆପ୍ୟାୟିତ କରି ନିଜର ମୁକ୍ତାତକ ଦେଖାଇଲେ ଏବଂ କହିଲେ—"ଏ ସମ୍ପାଦକଗୁଡ଼ାକ କେହି-ହେଲେ ଏଗୁଡ଼ାକରୁ ଗୋଟିଏ ବି ଛାପିଲେ ନାହିଁ । ଗବାଗୁଡ଼ାକ ତାଙ୍କୁ ପଡ଼ିଲେ କି ନାହିଁ କେଜାଣି । ସାହିତ୍ୟର ଅସଲ ଅସଲ ଗଣ୍ଠି କଥା ସବୁ ଏଥିରେ ଅଛି, ତେବେ ବି ସେମାନଙ୍କୁ ଭଲ ଲାଗିଲା ନାହିଁ । ମୁଁ ଭାବୁଛି ସମ୍ପାଦକଗୁଡ଼ାକ ବି ଅନ୍ୟାୟ ପାଉଣା ଆଦାୟ କଲେଣି । ଯାହାଠାରୁ ଶହେ ଦୁଇଶହ ପାଉଛନ୍ତି ତା ଲେଖାଟାକୁ ଛାପୁଛନ୍ତି । ଯାହାଠାରୁ ପାଉ ନାହାନ୍ତି ତା ଲେଖା ଯେତେ ଉପାଦେୟ ହୋଇଥାଉ ପଛକେ ଅଳଆ କାଗଜ ଟୋକେଇକୁ ଯାଉଛି । ଯେଉଁ ଲେଖାଗୁଡ଼ିକ ସେମାନଙ୍କ ପତ୍ରିକାରେ ପ୍ରକାଶ ପାଉଛି ସେଗୁଡ଼ାକ କଅଣ ମୁଁ ଦେଖୁନି ।

ସେଗୁଡ଼ାକ ଭିତରୁ କୌଣସିଟା ମୋ ଲେଖାଗୁଡ଼ିକର ସମକକ୍ଷ ହୋଇ-ପାରିବନି । ସମ୍ପାଦକ ଗୁଡ଼ାକଙ୍କର ଏମିତିଆ ନିର୍ଲଜ ପାତାର ଅନ୍ତରଙ୍ଗିଆ ଦେଖିଲେ କାହାର ଭଲ ଲାଗ ନ ହେବ ? ମୋର ଦୃଢ଼ ଧାରଣା ହୋଇ-ଗଲାଣି ଯେ ସମ୍ପାଦକମାନେ ଦେଖିବାକୁ ଆମ ରାଜ୍ୟରେ ଶୀର୍ଷ ଲୋକମାନଙ୍କ ଠାରୁ ଆରମ୍ଭ କରି ନିମ୍ନତମ ଲୋକ ସମସ୍ତେ ଅନ୍ୟାୟ ପାଉଣା ଆଦାୟ କରିବାରେ ଆଣ୍ଠେଇପଡ଼ି ଲାଗିଛନ୍ତି । ତେଣୁ ସେମାନେ ବି ସେଇ ବେଉସା ଆରମ୍ଭ କରିଦେଲେଣି । ଏମାନଙ୍କ ଉପରେ ତେଲ ବୋଳୁଅ ମାଡିଦେଲେ କ୍ଷତି କଅଣ ?

ମହାପାତ୍ରେ ଏତେବେଳଯାଏ ଉତ୍ତନଚ୍ଛୁଙ୍କର ଲେଖାରୁ କିଛି କିଛି ଆଖିବାଟେ ପିଉଥିଲେ, ଆଉ ତାଙ୍କ ବକ୍ତୃତାଗୁଡ଼ାକ କାନବାଟେ ପିଇଯାଉ-ଥିଲେ । ବକ୍ତୃତା ଧିମେଇ ଯିବାରୁ ମୁଣ୍ଡଟେକ କହିଲେ—'ହାସେ ଏତେ ରାଗିଯିବାଟା ଠିକ୍ ନୁହେଁ କି ନିଜ ଲେଖାର ତାରିଫ ନିଜେ କରିବା ଠିକ୍ ନୁହେଁ । ସବୁ ଲେଖା ତୁମର ଗୋଟିଏ ଗୋଟିଏ ପୁଅ । ତୁମର ପୁଅ ମାଙ୍କଡ଼ ପରି ହୋଇଥିଲେ ସୁଦ୍ଧା ତୁମକୁ କନ୍ଦର୍ପ ପରି ଦେଖାଯିବ । ଏଇଟା କିଛି ଗୋଟାଏ ଅପ୍ରାକୃତିକ କଥା ନୁହେଁ । ନିଜେ ଯାଇ ବି ଗୃହଧର ସମ୍ପାଦକମାନଙ୍କୁ ତେଲେଇ ଦେଇଥିଲେ ଏ ଲେଖାଗୁଡ଼ିକରୁ ଗୋଟାଏ ଅଧେ ଅବଶ୍ୟ ବାହାରି ପାରିଥାନ୍ତା । ସମସ୍ତେ ସେଇଆ କରୁଛନ୍ତି ତୁମେ ବି ସେଇଆ କରିଥାନ୍ତ । ଆଉ ତାହା ଯଦି ତୁମଦ୍ୱାରା ନ ହୋଇପାରୁଛି ତୁମେ ଚମକଦିଆ ଲେଖା ଲେଖ ।'

'ଚମକଦିଆ ଲେଖା ? ଏମିତିଆ ନାଆଁ ମୁଁ ଏ ପର୍ଯ୍ୟନ୍ତ ଶୁଣି ନ ଥିଲି । ସେଇଟା କଅଣ କହିବଟି ମହାପାତ୍ରେ, ମୁଁ ତାକୁଇ ଲେଖିବା ଆରମ୍ଭ କରିଦେବି ।

'ଆହେ ବିଜୁଳି ଟିକିଏ ଦେହରେ ବାଜିଗଲେ ଦେହରେ କେମିତି ଚମକ ଖେଳିଯାଏ, ଲୋକ ଚମକିପଡ଼େ, ଲେଖାଟା ସେମିତିଆ ହେବା ଦରକାର । ଅର୍ଥାତ୍ ଏମିତିଆ ଗୋଟାଏ ବିଷୟରେ ଲେଖିବ ଯାହା କି କେହି କେବେ ଶୁଣିନଥିବେ କି କଳ୍ପନା ବି କରି ନଥିବେ ।'

'କେହି ଯାହା କଳ୍ପନା କରିନପାରିବେ ତାହା ମୁଁ ବା କଳ୍ପନା କରିବି କେମିତି ? ତାହା ମୋ ମୁଣ୍ଡରେ ବା ପଶିବ କେମିତି ?

'ଆରେ ମିଛ କଥାଟାଏ କଳ୍ପନା କରିପାରିବନି ? କଥାରେ ପରା କହନ୍ତି ଗାଲୁଆଙ୍କ ବାରବାଟି ଗୃହ । ତେବେ ବି ଯଦି ମୁଣ୍ଡରେ ନ ପଶୁଛି ନିଅ ଗୋଟାଏ ଗୋଟାଏ ଗାଲୁଆ କଥା ଦଉଚ୍ଛି । ତାରି ଉପରେ ଗୋଟାଏ ପ୍ରବନ୍ଧ ଠିଆ କରେଇ ଦିଅ । ସେଇଟା ହେଲା—'ରାଧାନାଥଙ୍କର ଯେଉଁ ନିଶ ଥିଲା ତାହା କୃତ୍ରିମ ।' ବାସ୍ ଯେତେ ପାରୁଛ ଗାଲୁମାଲୁ କରି ଲେଖ । ଶତି ସବୁ ଅଛି ବୋଲି ଲେଖା ଦିଏ ଏହାକୁ ଅପ୍ରମାଣ କରିବ ଆଗେଇ ଆସୁ ବୋଲି ଆହ୍ୱାନ ଦେବ । ଏ ବିଷୟରେ କାହା ପାଖରେ କି ତଥ୍ୟ ଥିବ ଯେ ସେ ଆଗେଇ ଆସିବ । ତୁମେ ଜାଣ, ଓଡ଼ିଆ ସାହିତ୍ୟରେ ଏଇ ବୋମାଟାକୁ ଫୁଟାଇ ସମସ୍ତଙ୍କୁ ଚମକେଇ ଦେବ ଯାହାକୁ ଦେବ ସେ ଅତି ଆଗ୍ରହରେ ତମଠୁଁ ନେଇ ଛାପିବ ଆଉ ତମକୁ ଓଳିଟି କେତେ ତେଲେଇବ ଦେଖିବ । ପ୍ରବନ୍ଧଟି ବାହାରିଯିବା ପରେ ଦେଖିବ ଅନ୍ୟ ସମ୍ପାଦକମାନେ ତୁମକୁ କପରି ତେଲେଇବା ଆରମ୍ଭ କରିବେ । ଆଜି ରାତିରେ ଗୋଟାଏ ବନେଇ ଚ୍ନେଇ ଲେଖିଦିଅ । ମୁଁ କାଲି ଏତିକି-ବେଳକୁ ଆସିବି । ଯଦି କେଉଁଠି ବାଗେଇବାର ଥାଏ ବାଗେଇ ଦେବି । ତୁମେ ସଙ୍ଗେ ସଙ୍ଗେ ଜଣେ ସମ୍ପାଦକଙ୍କ ପାଖକୁ ନେଇଯିବ । ହଉ ମୁଁ ଚାଲିଲି ।'

ରାତିଯାକ ମିଛ ଖଣି ଭିତରକୁ ପଶି ଉଡ଼ିନନ୍ଦୁ ଦାସେ ବହୁ ମୂଲ୍ୟ-ବାନ ମିଛ ସଂଗ୍ରହ କଲେ ଓ ସଜେଇ ସଜେଇ ପ୍ରବନ୍ଧଟି ପୂରେଇଁକଲେ । ପରି-ଦିନ ଯଥା ସମୟରେ ଲବଙ୍ଗାବସୂଣ ମହାପାତ୍ରେ ଆସି ପହଞ୍ଚିଗଲେ ଏବଂ ଦାସଙ୍କୁ ପ୍ରବନ୍ଧଟି ପଢ଼ିବା ପାଇଁ କହିଲେ ଏବଂ ଦାସେ ପଢ଼ିବା ଆରମ୍ଭ କଲେ—ଶିରୋନାମା ରାଧାନାଥଙ୍କ ନିଶ ପ୍ରାକୃତିକ ନା କୃତ୍ରିମ ? ଏଯାବତ୍ ସାହିତ୍ୟିକ ତଥା ଜନସାଧାରଣ, ଚିତ୍ରରେ ଦେଖି ଆସିଛନ୍ତି ରାଧାନାଥଙ୍କ ନାକତଳେ ଏକ କମନୀୟ ପ୍ରାନ୍ତାବନତ ନିଶ । ତାଙ୍କ ସମୟରେ ତାଙ୍କ ସଙ୍ଗୀମାନେ ମଧ୍ୟ ଏହା ଦେଖିଛନ୍ତି । କିନ୍ତୁ ଅତି ଆଶ୍ଚର୍ଯ୍ୟର କଥା ଘୂଣା-କ୍ଷରରେ କେହିହେଲେ ସନ୍ଦେହ କରିପାରିନାହାନ୍ତି, ଯେ ସେହି ସୁଦୃଶ୍ୟ

ନଖଶଟି ପ୍ରାକୃତିକ ନୁହେଁ କୃତ୍ରିମ । ସନ୍ଦେହ ହୋଇଥିଲେ କଥାଟା ଅବଶ୍ୟ ଧରାପଡ଼ି ଯାଇଥାନ୍ତା । ଆଜଯାଏ ଯେଉଁ 'ମିଛଟି ତାର ଅଖଣ୍ଡ ରାଜତ୍ୱ' ଚଳାଇ ଆସିଛି ତାର ବିଲୋପ ସାଧନ କାହିଁ କେବଳ ହୋଇପାରନ୍ତାନି । ଦୈବାତ ଦୁଇଟି ଜରାଜୀର୍ଣ୍ଣ ଚିଠି ହସ୍ତଗତ ନ ହୋଇଥିଲେ ଲେଖକ ମଧ୍ୟ ଜାଣିଲେ ସନ୍ଦେହ କରିନଥାନ୍ତା ଯେ ରାଧାନାଥଙ୍କର ନଖ କୃତ୍ରିମ । ସତ୍ୟ କେବେହେଲେ ସବୁଦିନ ପାଇଁ ଲୁଚି ରହିପାରେ ନାହିଁ । ଦିନେ ନା ଦିନେ ଏହା ଜଳରାଶି ଉପରେ ଶ୍ୱେତ କମଳ ପରି ପ୍ରକାଶିତ ହୁଏ । ସତ୍ୟ ଚିରନ୍ତନ । ଏହାର ବିନାଶ ନାହିଁ, ଏହାର ଅଧୋଗତି ନାହିଁ । ଏହା ସର୍ବଦା ଊର୍ଦ୍ଧ୍ୱଗାମୀ ଓ ପ୍ରକାଶୋନ୍ମୁଖ । ଏହା ଏକ ଜ୍ୱଳନ୍ତ ଅଗ୍ନି । ସମସ୍ତ ଆବରଣକୁ ଏହା ଦଗ୍ଧ କରି ଆତ୍ମପ୍ରକାଶ କରେ । ସେହି ଲୋମହର୍ଷଣ-କାରୀ ଚିଠି ଦୁଇଟିର ପ୍ରାପ୍ତି ଅତି ଅପ୍ରତ୍ୟାଶିତ ଓ ଆକସ୍ମିକ । କଲିକତାର ରାସ୍ତାକଡ଼ ଏକ ପୁରୁଣା ବହି ଦୋକାନରୁ ମାତ୍ର ଦଶ ପଇସାରେ ଗୋଟିଏ ଅତି ଜରାଜୀର୍ଣ୍ଣ ବଙ୍ଗଳା କବିତା ବହି କିଣି ଆଣିଥିଲି । ଘରେ ସେ ବହି ଓଲଟାଉ ଓଲଟାଉ ତା'ର ଭିତରୁ ଏହି ଦୁଇଟିଯାକ ଚିଠି ପାଇଲି । ତାକୁ ପଢ଼ିବା ମାତ୍ରେ ମୋ ରୁମ ଠାକୁର ଉଠିଲା । କିନ୍ତୁ ସମସ୍ତେ ଅବାକ୍ ହୋଇଗଲି । ତଳେ ଚିଠିର ଓଡ଼ିଆ ଅନୁବାଦ ଦେଲି । ଚିଠିର ଭାଷା ଥିଲା 'ବଙ୍ଗଳା । ଚିଠିର ଉପର ଅଂଶଟି ସମ୍ପୂର୍ଣ୍ଣ ଭାବେ କୀଟଦଂଷ୍ଟ ହୋଇଥିବାରୁ ପ୍ରେରଣ ସ୍ଥାନ ଓ ତାରିଖ ସମ୍ପୂର୍ଣ୍ଣରୂପେ ନଷ୍ଟ ହୋଇଯାଇଥିଲା ।

ପ୍ରିୟ ଚପଳା—ତୁ ତ ଭଲଭାବରେ ଜାଣୁ ଓଡ଼ିଆ କବିବର ରାଧାନାଥଙ୍କୁ ମୁଁ କେତେ ଆପଣାର କରିପାରିଥିଲି । ମୋତେ ସେ ମନ୍ମଥ ପରି ଦେଖାଯାଉଥିଲେ । ତାଙ୍କ ଶରୀରର ପ୍ରତ୍ୟେକ ଇଞ୍ଚ ମୋର ଅତି ପ୍ରିୟ ଥିଲା କିନ୍ତୁ ତାଙ୍କ ନଖ ଦୁଇଟିକୁ ମୁଁ ମୋଟେ ସହ୍ୟ କରିପାରୁ ନ ଥିଲି । ମୁଁ ସେ ନଖକୁ ଦେଖିବା ମାତ୍ରେ ଭାବୁଥିଲି କେତେ ସିଙ୍ଘାଣି ତହିଁରେ ଶୁଖି ଲାଗିନଥିବ ! ମୋ କାନ ପାଖକୁ ସେ ଯେତେବେଳେ ନଖୁଆ ମୁହଁ ନେଇ ଆସୁଥିଲେ ସେତେବେଳେ ମୋତେ ଭାରି ଘୃଣା ଲାଗୁଥିଲା । ମୁଁ ତାଙ୍କୁ ବାରମ୍ବାର ସେ ନଖକୁ କାଟିଦେବାକୁ ଅନୁରୋଧ କରୁଥିଲି । କିନ୍ତୁ ସେ ସେଥିରେ କର୍ଣ୍ଣପାତ କଲେ ନାହିଁ । ଦିନେ ରାତିରେ ସେ ଗାଢ଼ନିଦ୍ରାରେ ଅଭିଭୂତ ଥିଲାବେଳେ ମୁଁ କଇଞ୍ଚି ନେଇ ତାଙ୍କ ନଖରୁ ଯାକେ କାଟି-

ଦେଖା ଉଠିବା ପରେ ସେ ମୁହଁରେ ହାତ ବୁଲେଇଦେଇ ଏହା ଜାଣି-ପାରିଲେ । ମୋତେ କହିଲେ ତୁମେ ଏ କଅଣ କଲ ? ଆଉ ପାଖଟିକୁ ରଖିଲ କାହିଁକି ? ମୁଁ ସଙ୍ଗେ ସଙ୍ଗେ ତାଙ୍କ ଖୁର ଆଣି ଦୁଇ ପାଖପାକ ଭଲ କରି ରାମ୍ପିଦେଲି । ସେ ପୁଣି କହିଲେ—ଏତକ ତ କରିଦେଲ । ଏବେ ମୁଁ ପଦାକୁ ବାହାରିବି କେମିତି ? ଲୋକେ ମୋତେ ଦେଖି କାଳିଦାସଙ୍କ ଲଣ୍ଡା ହେବା କଥା ଲୁହାକୋହ ହେବେ ଏବଂ ତୁମକୁ ମୋତେ ଏକାଠି କରି ନାନା ଅପ୍ରିୟ କଥା କହିବେ । ଯାହା ଶୁଣିଲେ ଆମ ଉଭୟଙ୍କୁ କଷ୍ଟ ହେବ । ଏତେବେଳେ ଯାଇ ମୁଁ କଥାଟା ବୁଝିପାରିଲି ଓ ଇତସ୍ତତଃ ହେଲି । ସାରାଦିନ ସେ ଆଉ ପଦାକୁ ବାହାରିଲେ ନାହିଁ । ଜଣେ ବିଶ୍ୱସ୍ତ ଲୋକ ହାତରେ ଜଣେ ଥିଏଟର୍‌ବାଲାଠାରୁ ଗୋଟିଏ ଅନୁରୂପ କୃତ୍ରିମ ନଶ ତିଆରି କରେଇ ଅଣେଇଲି । ଅଳ୍ପ ଟିକଏ ସ୍ପିରିଟ୍‌ଗମ୍ ସାହାଯ୍ୟରେ ତାକୁ ନାକତଳେ ନ ଲଗାଇବାଯାଏ ସେ ପଦାକୁ ବାହାରିଲେ ନାହିଁ । ସେ ଦାନ୍ତ ଏଠାରେ ବଡ଼ ମହର୍ଗ । କଡ଼ା-ଲଗାରେ ଗୋଟିଏ ନଶ ଖୁବ୍ ହେଲେ ଦି' ଦିନ ଯାଉଛି । ତୁ ଡ୍ରେଲ୍‌ହାଉସି ସ୍କୋୟାରରୁ କିଛି ଏହି ବାଳର ବଢ଼ା କିଣି ଭି.ପି.ରେ ମୋ ପାଖକୁ ପଠେଇଦେବୁ । ଏକଥା କାହାରି ଆଗରେ କହିବୁ ନାହିଁ । ତୁ ଓ ମୁଁ ଯଦି କଥାଟାକୁ ଗୋପନ ରଖିବା ତେବେ କେହି ଜାଣିପାରିବେ ନାହିଁ । ତାଙ୍କର ସମ୍ମାନ ଦୃଷ୍ଟିରୁ ଏଇଟା ଅତି ଗୋପନୀୟ କରି ରଖିବୁ । ଏପରିକି ତୋର ତାଙ୍କୁ ମଧ୍ୟ କହିବୁନି । ବାଳ ବଢ଼ା ଶୀଘ୍ର ପଠାଇବୁ ।

ଇତି ତୋର

ଅନ୍ୟ ଚିଠିଟି ମଧ୍ୟ ଏହିପରି ଥିଲା । × × ×

ତୋର ଚିଠିପତ୍ର ଯେତକ ହସିଲି ସେତକ ଦୁଃଖ କଲି । ଓଡ଼ିଶାର ଜଣେ ବରେଣ୍ୟ କବିଙ୍କୁ ଏପରି ହଟହଟା କରିବା ତୋ ପକ୍ଷରେ ଅତି ଅନ୍ୟାୟ ହୋଇଛି । ତାଙ୍କ ପ୍ରେମର ପ୍ରତିଦାନ କଅଣ ଏଇଆ ? କ ହଇରାଣ ସେ ନ ହେଉଥିବେ । ଏଥିସହ ବାଳବଢ଼ା ଓ ଗମ୍ କିଛି ପଠାଇଲି । ସ୍ପିରିଟ୍ ସେହିଠାରେ ମିଳିବ । ଏ କ ସରିବା ପୂର୍ବରୁ ଲେଖିଲେ ମୁଁ ସଙ୍ଗେ ସଙ୍ଗେ ଆଉ ପଠାଇଦେବି ।

ଇତି ତୋର

ଏଇ ଦୁଇଟି ଚିଠିରୁ ସବୁକଥା ଅବଲୋକନ ପରେ ସ୍ପଷ୍ଟ ହୋଇଯିବ ଯେ ରାଧାନାଥ କୃତ୍ରିମ ନାମ ଲଗାଉଥିଲେ ।

ପ୍ରାୟ ଏକ ଶତାବ୍ଦୀ ଯାଏ ଏହି ସତ୍ୟ କଥାଟି ଆତ୍ମଗୋପନ କରିବା ପରେ ଏବେ ଅତି ଆକସ୍ମିକ ଭାବରେ ପ୍ରକାଶିତ ହୋଇଗଲା । ସତ୍ୟ ଲୁଚି ରହିପାରିବ ନାହିଁ । ସତ୍ୟର ଜୟ ହୋଇଛି । ଏହିପରି କାଳେ କାଳେ ସତ୍ୟର ଜୟ ହେଉଥିବ । ସତ୍ୟମେବ ଜୟତେ ।

ମଜା ସରିଲା । ରବିନାରାୟଣ ମହାପାତ୍ରେ କୁଳୁରିଉଠି କହିଲେ, "ହଇହେ ଦାସେ ତୁମଠାରେ ଏତେ ପ୍ରତିଭା ଚାପିହୋଇ କେମିତି ରହିଲା ତାହା ଜାଣି ମୁଁ ହାଉଳି ଖାଇଯାଉଛି । ମୁଁ ତୁମକୁ ବଡେଇବି କଅଣ, ଏବେ ମୁଁ ତୁମଠୁଁ କିଛି କିଛି ଶିକ୍ଷା କରିବି । ଏଥର ସମ୍ପାଦକମାନଙ୍କ ପାଖକୁ ଯାଅ, ଦେଖିବ କେମିତି ଏ ପ୍ରବନ୍ଧଟି ପାଇଁ ଉହାଳବକାଳ ହୋଇଯିବେ । ଅନ୍ୟ କେହି ଗବେଷକ ଏହାର ମୁକାବିଲା କରିପାରିବେ ନାହିଁ । କାହା ପାଖରେ ଏ ବିଷୟରେ କି ତଥ୍ୟ ବା ରେକର୍ଡ ଅଛି ଯେ ସେ ଆସିବ ତୁମ ସାଙ୍ଗରେ ତାଳ ପକେଇବାକୁ । ଏହା ଉପରେ ଅନେକ ହନପ. ଏ ହୈଚୈ ଲାଗିଯିବ । ତାପରେ ଆଉ ଗୋଟାଏ ଏମିତିଆ ଜିନିଷ ବାଡ଼ି ଦେବ । ଗୋଟାଏ ବର୍ଷରେ ତୁମେ ସବୁ ସମ୍ପାଦକଙ୍କ ଅତି ପ୍ରିୟ ଓ ଗବେଷକମାନଙ୍କ ଭିତରେ ଅଗ୍ରଗଣ୍ୟ ହୋଇଯିବ । ଆଣ ଆଣ କିଛି ଛେନାପୋଡ଼ ଆଣିବଟି ।



# ପଦ୍ମତୋଳା

‘ସାହିତ୍ୟ କୁଦ’ ପତ୍ରିକାର ସମ୍ପାଦକ ଟେବୁଲ ଉପରେ ଫାଇଲ ଗୁଡ଼ାଏ ଖେଳାଇ ଦେଇ, ଦୁର୍ଗନ୍ଧ ଆଘ୍ରାଣ କଲାପରି ମୁହଁ ବିକୃତ କରି, ଗାଲରେ ହାତ ଦେଇ ଅଫିସ ଭିତରେ ଚୁପ୍‌ଚାପ ବସିଥାଆନ୍ତି । ବେଳେ ବେଳେ ଗୋଟାଏ ଫାଇଲ ଖୋଲି କିଛି ଲେଖା ଘାଣ୍ଟି ପକାଉଥାଆନ୍ତି ଆଉ ଅଧିକ ମୁଖ ବିକୃତ କରି ଫାଇଲଟାକୁ ଫେଲି ଦେଉଥାଆନ୍ତି, ଠିକ୍ ଯେପରି ଠିକ୍ ଠିକ୍ ପଇସା ଦେଉ ନ ଥିବା ପଡ଼ୁଆ ମହକଲର ଫାଇଲକୁ ଓକିଲ ବାବୁ ଫେଲି ଦିଅନ୍ତି । ମୁହଁରେ ସମ୍ପାଦକଙ୍କର ତୀବ୍ର ବିରକ୍ତି ଓ ହତାଶା ବୋଳି ହୋଇଯାଇଥାଏ, ଏତିକିବେଳେ ଜଣେ ଜବରଦସ୍ତ ଚୁଇଁ ଲେଖକ ଆସି ତାଙ୍କ ଟେବୁଲ ଆଗରେ ପଡ଼ିଥିବା ଚୌକୀରେ ବସିଲେ ଆଉ ସମ୍ପାଦକଙ୍କ ବିରକ୍ତି ସହ ନିଜର ବିରକ୍ତିକୁ ମିଶାଇ ଦେଇ କହିଲେ—“ଆଜ୍ଞା ମୋ କବିତାଟା ତ କାହିଁ ଏ ସଂଖ୍ୟାରେ ବାହାରିଲା ନାହିଁ ! କହିଥିଲେ ଏଥର କାଢ଼ିବେ ବୋଲି, ପତ୍ରିକାର ଏ ମୁଣ୍ଡ ସେ ମୁଣ୍ଡ ଖୋଜିଗଲି, କାହିଁ ମୋ କବିତାର ଚିହ୍ନ ବର୍ତ୍ତି ପାଇଲି ନାହିଁ ।”

“କେଉଁ କବିତା ?”

“ଏତେଥର କହିଲଣି ତେବେ ବି ତାର ନାଆଁଟା ମନେ-ରଖି ପାରିଲେ ନାହିଁ । ବର୍ଷେ ହୋଇଗଲା, ପ୍ରତି ମାସରେ ଚାରି ପାଞ୍ଚଥର ଲେଖାଏଁ ନାଆଁ କେବଳ ଶୁଣାଉଛି । ସବୁବେଳେ କହୁଛନ୍ତି ହଁ ଏହି ମାସରେ କାଢ଼ିବା, ଅଥଚ କବିତାର ନାଆଁଟି ବି ମନେରଖି ପାରୁ-ନାହାନ୍ତି । କବିତା ବିଷୟରେ ଯେତେବେଳେ ପଚାରୁଛି ସେତିକିବେଳେ ସେହି ଗୋଟିଏ ଉତ୍ତର ଶୁଣୁଛି—କୋଉ କବିତା ?”

"ଆପଣ ସିନା ଗୋଟାଏ କବିତା ସହିତ ସମ୍ପୃକ୍ତ ଯେ ସେଇଥିପାଇଁ ନାଆଁ ମନେରଖିବେ । ମୁଁ ଯେ ଶହ ଶହ ପାଞ୍ଚଶହ କବିତା ସହିତ ସମ୍ପୃକ୍ତ । ଆପଣଙ୍କ କବିତାଟାକୁ ମନେ ରଖିବି କିପରି ?"

"ଆଜ୍ଞା ଆପଣ ମୋତେ ହତାଦର କରନ୍ତୁ, ସେଥିରେ ମୁଁ କ୍ଷୁବ୍ଧ ହେବି ନାହିଁ, କିନ୍ତୁ ମୋର କବିତା ପ୍ରତି ଅସମ୍ମାନସୂଚକ ଭାଷା ପ୍ରୟୋଗ କଲେ ତାହା ମୋ ହୃଦୟରେ ଛୁରୀ ଚଳାଇ ଦେବ ।

"ମୁଁ ଅସମ୍ମାନସୂଚକ ଭାଷା ପ୍ରୟୋଗ କଲି କେଉଁଠି ? ଆପଣ ଅଯଥା ଦୋଷାରୋପ କରୁଛନ୍ତି କିଆଁ ?"

"ବର୍ତ୍ତମାନ କହି ସଙ୍ଗେ ସଙ୍ଗେ ଭୁଲିଯାଉଛନ୍ତି ? ଆପଣ ଗୋଟାଏ କବିତା, ବୋଲି କହିନାହାନ୍ତି ? ଏଗୁଡାକ ତାଚ୍ଛଲ୍ୟ-ସୂଚକ ନୁହେଁ ? ଆପଣ କହିପାରିବେକି 'ରାଷ୍ଟ୍ରପତିଟାକୁ' ଗୋଟାଏ ରାଷ୍ଟ୍ରପତି ? ନା ତାହା କେବେହେଲେ କହି ପାରିବେ ନାହିଁ"

ଏହା ଭିତରେ ସାହିତ୍ୟ ଫୁଲକାର ପଣ୍ଡିତମାନ ରବିନାରାୟଣ ମହାପାତ୍ରେ ଆସି ସେଠାରେ ବସି ଯାଇଥିଲେ, ଆଉ ସବୁ କିଛି ଶୁଣୁଥିଲେ । ସେ ଆକୁରି ପଡ଼ି ସମ୍ପାଦକଙ୍କୁ କହିଲେ—"ପ୍ରକୃତରେ କବିତାଙ୍କ ପ୍ରତି ଏପରି ହେୟଜ୍ଞାନ ରଖିବା ଠିକ୍ ନୁହେଁ, ଗୋଟାଏ କବିତା' ନ କହି ମୂର୍ତ୍ତିଏ କବିତା କହିବା ଉଚିତ ଥିଲା । 'କବିତା' ଟାଏ ଆସିଛି' ନ କହି ମୂର୍ତ୍ତିଏ କବିତା ଶୁଭାଗମନ କରିଅଛନ୍ତି ବୋଲି କହିବା ଉଚିତ ଥିଲା ।"

ଏ ଟିଟିକାରିଟା ଅସହ୍ୟ ହେବାରୁ କବି ରାଗିଯାଇ ସମ୍ପାଦକଙ୍କ ଉଦ୍ଦେଶ୍ୟରେ କହିଲେ—"ଦେଖନ୍ତୁ ସେ କବିତାଟି ମୋର ଏକ ଅନବଦ୍ୟ ସୃଷ୍ଟି । ବହୁ ପତ୍ରିକାର ସମ୍ପାଦକ ମୋଠାରୁ ଏଇଟା ପାଇବା ଲାଗି ଏକ ପ୍ରକାର ଝଗଡାଝାଣ୍ଟି ଲଗାଇଥିଲେ । ମୋର କିନ୍ତୁ "ସାହିତ୍ୟକୁଦ ପ୍ରତି ଦରଦ ଥିବାରୁ ଆପଣଙ୍କୁ ଆଣି ଦେଇଛି ।"

ରବି ମହାପାତ୍ରେ ଆଜ ସମ୍ଭାଳି ହୋଇ ରହିପାରିଲେ ନାହିଁ, କବିଙ୍କର ଅତି ବେଶି ତାରିଫ୍ କରି କହିଲେ—"ଆଜ୍ଞା ଆପଣଙ୍କଠାରୁ ଅଧିକ ଭାଗ୍ୟବାନ କବି ଓଡ଼ିଶା କାହିଁକି ସାରା ପୃଥିବୀରେ ଦେଖିବାକୁ ମିଳିବନି । ଜଣେ ନବାଗତ କବି ପକ୍ଷରେ ଏହା ଚରମସୌଭାଗ୍ୟ ।

"ମୁଁ ନବାଗତ ନୁହେଁ । ସବୁ ବଡ଼ ବଡ଼ ପତ୍ରିକାରେ ମୋର କବିତା ବାହାରେ, ଜଣେ ନାମଜାଦା ପ୍ରକାଶକ ମୋର କବିତା ସଙ୍କଳନଟି ନେଇଛି, ଦୁଇବର୍ଷ ହେଲା ମୋଠାରୁ ନେଲଣି, କାଗଜ ପାଇଁ ଅପେକ୍ଷା କରିଛି । କାଗଜ ମିଳିଲେ ମୋର ଆଗେ ଛାପିଦେବ ।

"ହୋଇଥିବ, ହୋଇଥିବ, ଦୁଇବର୍ଷ ହେଲା ପ୍ରକାଶକଟା ବହି ବେପାର ବନ୍ଦ କରିଦେଇ ଗୁଡ଼ଜନ ଡାଲି ବେଉସା ଆରମ୍ଭ କରି ଦେଇଥିବ । ଦୁଇବର୍ଷ ହେଲା 'ଯେତେବେଳେ ଆପଣଙ୍କ ବହି ପ୍ରକାଶକ ପାଖକୁ ଗଲାଣି, ସେତେବେଳେ ଆପଣଙ୍କୁ ନବାଗତ କହିବା ମୋ ପକ୍ଷେ ନିନ୍ଦନୀୟ ବିଷୟ ।'

"ଛାଡ଼ନ୍ତୁ ସେ କଥା, ଆଜ ବ୍ୟସ୍ତ ହୁଅନ୍ତୁ ନାହିଁ । ଆପଣ ଯେ ନିଜ ଭୁଲ ବୁଝିପାରିଛନ୍ତି ତାହା ମୋ ପକ୍ଷେ ଯଥେଷ୍ଟ । ଆପଣ ଜଣେ ଯଥାର୍ଥ ମୂଲ୍ୟାୟକ । ଅନ୍ୟମାନେ ତ କଥାକୁ ଫିମ୍ଫୁଡ଼ିରେ ଉଡ଼ାଇ ଦିଅନ୍ତି । କବିଙ୍କୁ ହେୟଜ୍ଞାନ କରି ଗାଳିଗୁଲଜ କରନ୍ତି । ଆପଣଙ୍କ ପରି ଜଣେ ସମଜଦାର ମୂଲ୍ୟାୟକ ମୁଁ ଆଉ କେଉଁଠି ଦେଖିନି ।"

ଶେଷରେ କବି ସମ୍ପାଦକଙ୍କୁ ଆସନ୍ତା ସଂଖ୍ୟାରେ ଯେ କୌଣସିମତେ କବିତା ମୂର୍ତ୍ତିଙ୍କୁ ଛାପିବାକୁ ଚେତାଇ ଦେଇ ଚାଲିଗଲେ । ତାପରେ ରବି ମହାପାତ୍ରେ ପଚାରିଲେ—" ହଇହେ କି କବିତା ମୂର୍ତ୍ତି ସେ "ସାହିତ୍ୟ-ଭୂଦ' ସିଂହାସନରେ ଥୋଇ ଦେଇଛି ?"

"ନିହାତି ବାଜେ କବିତାଟାଏ—ନା ଅଛି ସୌନ୍ଦର୍ଯ୍ୟ, ନା ଅଛି ବାସନା । ସେ କିନ୍ତୁ ମନେ ମନେ ଠିକ୍ କରି ନେଇଛି ଯେ ସେ ଏକ ପାରିଜାତ ଫୁଲ ପ୍ରସବ କରି ପକେଇଛି । ତାକୁ ପଢ଼ିଲେ ନୋବେଲ ପ୍ରାଇଜବାଲା ପ୍ରାଇଜ୍‌ଟାକୁ ହାତରେ ଧରି ତା ପଛେ ପଛେ ଦୌଡ଼ି-ଲବେ ଆଉ ପ୍ରାଇଜ୍ ଗ୍ରହଣ କରିବାକୁ ତାକୁ ଖୋସାମଦ କରିବେ ।"

"ହୁଁ ହୁଁ ସେ ସେହି କାଠର ,ଜଣାପଡ଼ୁନି । ଦେଖିଲନି ; ମୁଁ ତାଙ୍କୁ କଅଣ କହିଲି ଆଉ ସେ କିପରି ତାକୁ ଗ୍ରହଣ କଲା । ଆମ ଲେଖକ-ମାନଙ୍କର ଗୋଟାଏ ବଡ଼ ଦୋଷ ହେଲା—ଦି' ଗୋଟା ଗପ ବା କବିତା ସେମାନଙ୍କର ପ୍ରକାଶ ପାଇଗଲେ ସେମାନେ ଫେରେ ଫାଟିପଡ଼ନ୍ତି । ସମ୍ପାଦକମାନଙ୍କୁ ଗାଳି, ପ୍ରକାଶକମାନଙ୍କୁ ଗାଳି, କିଏ ତା ପ୍ରବନ୍ଧରେ ତାଙ୍କ ନାଁ ଲେଖିଲା ନାହିଁ ତାକୁ ଗାଳି, କିଏ ତାଙ୍କ ଲେଖାକୁ 'ଛି' ବୋଲି କହିଲା ତାକୁ ଗାଳିଦେବାରେ ଲାଗିଯାଆନ୍ତି । ସେମାନଙ୍କୁ ଗୋଟିଏ କଥା କହି ବିଦା କରିଦେବ—'ଆପଣଙ୍କ କବିତା ବୁଝିବାକୁ ମୋ ମୁଣ୍ଡରେ ମସଲା ନାହିଁ ।"

"ଠିକଣା କଥାଟାଏ କହିଛ । ଆହେ ଗୋଟାଏ ହେଲେ ନାମ-ଜାଦା ଲେଖକ 'ସାହିତ୍ୟକୁଦ' ଆଡ଼େ ମୁହାଁଉ ନାହାନ୍ତି । କେତେକ ଏଇ କବିଙ୍କ ପରି ବାତ୍‌ଫୁରୁସିଆ ଦଳ ଆସି ଏଇଠି ଭିଡ଼ ଜମେଇ ଦେଉଛନ୍ତି ।" ଗୋଟାଏ ହେଲେ ବଡ଼ ଭକୁଡ଼ ମୋ ଖାଲେଇରେ ପଶନ୍ତା । ହଜାରେ ଦଣ୍ଡିକିଶି ମାଛ ସାଲୁ ସାଲୁ ହେଉଛନ୍ତି, ସେଥିରେ କି ଲାଭ ସେ ବଡ଼-ମୁଣ୍ଡି ଆଗୁଡ଼ାଙ୍କୁ କେତେ ଖୋସାମଦ କେତେ ନେହୁରା ହେଲିଣି । ହେଲେ ଧାଡ଼ିଏ ହେଲେ ବି ଲେଖି ପଠାଉ ନାହାନ୍ତି, ଯେତେବେଳେ ସେମାନଙ୍କୁ ଭେଟୁଛି ସେମାନେ କହୁଛନ୍ତି ଜଞ୍ଜାଳଗ୍ରସ୍ତ, ସମୟ ନାହିଁ, 'ଅନ୍ୟ ଏକ ଗୁରୁତର କାମରେ ହାତ ଦେଇଛି । ସତେକି ଯେପରି ସେମାନେ କେତେ-ବେଳେ ହେଲେ କାହା ସାଙ୍ଗରେ ଖୁସି ଗପ ସପ ହେଉ ନାହାନ୍ତି । ଧେତ, ଭାରି ବିରକ୍ତ ଲାଗିଲାଣି । ଆଉ ସେ ବୁଢ଼ା ଧୋକଡ଼ାଙ୍କ ପାଖ ମାଡ଼ିବନି ।"

ରବି ମହାପାତ୍ରେ ଆଶ୍ୱାସନା ଦେଇ କହିଲେ—"ସବୁ କିଛି ହୋଇପାରିବ—ଠିକ୍ ଭାବରେ, ଠିକ୍ ସମୟରେ କରିପାରିଲେ । ତୁମେ ତ ଥୋପ ନ ଦେଇ ବନ୍‌ଶୀ ପକେଇବ, ବଡ଼ ମାଛ ଧରିବ କୁଆଡ଼ୁ ? ବଡ଼ ମାଛମାନେ ତୁମଆଡ଼େ ମୁହାଁଇବେ କାହିଁକି ?"

"ମୁଁ ମାଙ୍କଡ଼ଚଢ଼ ମାରି ସାରିଲିଣି, ତୁମେ କିଛି ଗୋଟାଏ ବାଟ ବତେଇ ଦେଲ ଭଲା !"

"ଓ ଏଇ କାମଟା ତ ? ଏଇଟା ଗୋଟାଏ ଗ୍ଲେଟକାଟିଆ କାମ, ହେଲେ ଟିକଏ ସମୟ ଲାଗିବ । ଯେତେ ବଡ ବୋଦ୍ଧା ସେ ହୋଇଥାଉ ନା କାହିଁକି, ଏମିତ ଥୋପ ପକେଇବ ଯେ ସେ ବିନା ଡାକବାରେ ତୁମ ଖାନେର ଭିତରେ ଠେଲ ପେଲ ପଶିବେ । କେଉଁ ଧରଣର ଲେଖା ଆଉ କୋଉ ଲେଖକର ଲେଖା ତୁମର ଦରକାର କୁହ ।"

"କଅଣ ଗଛରୁ ତୋଳି ଆଣିଲା ପରି କହୁଛ ? ସତରେ କହୁଛ, ତୁମେ ନା ଥଟ୍ଟା କରି କହୁଛ ?

"ଆହେ ତାକତ ନ ଥିଲେ ରବି ମହାପାତ୍ର କହୁ କରିବାକୁ କହେନ । ମୁଁ ଉଦ୍ଧବଙ୍କ ପରି ଅଲଣା କଥା କହେ ନାହିଁ । କଅଣ ଦରକାର କୁହ । ପରୀକ୍ଷା ପୂର୍ବରେ ଜଣେ ଲେଖକ ଓ ଗୋଟିଏ ବିଷୟ କୁହ ।"

"ପତ୍ରିକା ପାଇଁ ସବୁଠାରୁ ବଡ଼ ଜିନିଷ ହେଲା ମୌଳିକ ପ୍ରବନ୍ଧ । ସୁରେନ୍ଦ୍ର ମହାନ୍ତି ତ ଏବେ ବଡ଼ କଲ୍‌ଚର ପ୍ରାବନ୍ଧିକ ହୋଇଛନ୍ତି, ଆଣିଲ ଭଲ ଦେଖି ତାଙ୍କଠାରୁ ଗୋଟାଏ ପ୍ରବନ୍ଧ ତମ କାତୁମର୍ଦ୍ଦନ ଦଣିଆ ଦେଖିବା ।"

"ଆରେ ମୁଁ ଆଣିବି କଅଣମ, ତାଙ୍କୁ ମାଡି ଯିବିନ, ସେ ଗୁଏଁ ଗୁଏଁ ପ୍ରବନ୍ଧଟାଏ ତୁମ ପାଖକୁ ପଠାଇଦେବେ ।"

"ହୁଁ ! ତାଙ୍କ ପାଖରେ ମାସେ ଅଧିଆ ପଡ଼ିଲେ ବି ଲେଖାଟିଏ ମିଳିବା କାଠିକର ପାଠ । ତୁମେ ବୋଧହୁଏ ପିଚେଇ ସଉରୁଣୀ ଅଙ୍କା ମନ୍ତ୍ର ପଢ଼ିଦେବ ଯେ ସେ ଗୁନଆରେ ଗୋଟାଏ ପଠେଇ ଦେବେ ।"

"ଆହେ ନଈ ନ ଦେଖୁଣୁ ଏପରି ଲଙ୍ଗଳା ହେଉଛ କାହିଁକି ? ମୋ 'ପିଚେଇ ସଉରୁଣୀ ମନ୍ତ୍ର' ପେଷିବାଯାଏ ଅପେକ୍ଷା କର, ଯଦି ଲେଖା ନ ଆସେ ତେବେ ମୋତେ ମୂଷିର ଜେନା କରିଦେବ ।"

"ମୂଷିର ଜେନା ?"

"ହଁ ହଁ, ମାନେ ମୋ ନାଆଁ ଦ୍ୱାରେ ଗୋଟାଏ କୁକୁର ପାଳିବୁ !"

"ହଉ ହଉ ତୁମ ପିଟେଇ ସଉରୁଣୀ ମନ୍ତ୍ର ଏବେ ପେଷିବା ଆରମ୍ଭ କର ।

"ଠିକ୍ ଅଛି ମୁଁ ଆଜ ରାତିରେ ଗୋଟିଏ ପ୍ରବନ୍ଧ ଲେଖିବି । କାଲି ତୁମକୁ ଆଣି ଦେବି । ସେଇଟା ପଢ଼ି ଆଖି ଖୋଷି ଦେଇ ରହିଯିବନା । ଆଖି ବୁଜି ଦେଇ ତାକୁ ଛାପିଦେବ । ଲେଖକ ନାଆଁ ରଖିବ କୁଣ୍ଡାଦାସ । ପତ୍ରିକା ଛାପି ଖଣ୍ଡିଏ କପି ପୋଷ୍ଟରେ ତାଙ୍କ ପାଖକୁ ପଠାଇଦେବ । ତା ପରେ ଲେଖା ଆସୁଛି କି ନା ଦେଖିବ ।"

ପରଦିନ କୁଣ୍ଡା ଦାସଙ୍କ ପ୍ରବନ୍ଧ ପଢ଼ି ସମ୍ପାଦକ ପହିଲେ ଗ୍ରେଭ ଖାଇଗଲେ । ସେଥିରେ ଲେଖାଥିଲା—'× × × ସାହିତ୍ୟ ମାଧ୍ୟମରେ ଫକୀର ମୋହନ ଓଡ଼ିଆମାନଙ୍କୁ ଯେପରି ଲାଞ୍ଛିତ ଓ ଅପଦସ୍ତ କରିଛନ୍ତି ତାର ପଟାନ୍ତର ନାହିଁ । ଅଳ ଭାରତୀୟ ଦରବାରରେ ସମସ୍ତେ ଓଡ଼ିଆ-ମାନଙ୍କୁ ଜଣେ ଜଣେ ରାମଚନ୍ଦ୍ର ମଙ୍ଗରାଜ, ନଟବର ଦାସ ବୋଲି ଭାବନ୍ତି । ଭଗିଆ, ସାରିଆ ପରି ବୋକା ବୋକୀ ବି ଓଡ଼ିଶାରେ ଭରପୂର । ଓଡ଼ିଆଣୀ-ମାନେ ହୁଏତ ଚମ୍ପା ନ ହେଲେ ଚନ୍ଦକଳା ଅଟନ୍ତି । ମୋଟ ଉପରେ ଓଡ଼ିଶାଟା ଟାଉଟର, ପରସ୍ୱାପହାରୀ, ଷଡ଼ଯନ୍ତ୍ରୀ ଓ ବୋକାବୋକୀଙ୍କ ରାଜ୍ୟ । ସେଇଥିଲାଗି ଆଜଯାଏ ପଡ଼ୋଶୀ ରାଜ୍ୟମାନେ ଓଡ଼ିଶାକୁ ଘୃଣା କରୁଛନ୍ତି, ଲୁଟୁଛନ୍ତି । ଏହାର କର୍ତ୍ତା ହେଲେ ଫକୀର ମୋହନ । ଏପରି ଜଣେ ଖରାପ ଲୋକଙ୍କୁ ଟେକି ଟାକି ସୁରେନ୍ଦ୍ର ମହାନ୍ତି ସ୍ୱର୍ଗରେ ନେଇ ବସେଇ ଦେଇଛନ୍ତି । ସେହି ସୁରେନ୍ଦ୍ର ମହାନ୍ତି ହୋଇଛନ୍ତି ପୁଣି ଓଡ଼ିଶାର ସର୍ବଶ୍ରେଷ୍ଠ ସାହିତ୍ୟିକ । × × ଫକୀର ମୋହନଙ୍କୁ କାନ୍ତଲାଲର ପରମ ଶତ୍ରୁ ଭାବେ ଚିତ୍ର କରାଯାଇଛି, ଏଇଟା ତୁଚ୍ଛା ମିଛ କଥା, ତାଙ୍କର ଏକ ଗୁପ୍ତ ଡାଇରୀ ଏବେ ଆମର ହସ୍ତଗତ ହୋଇଛି । ସେଥିରେ ସେ ନିଜ ହସ୍ତାକ୍ଷରରେ ଲେଖିଛନ୍ତି ଯେ କାନ୍ତଲାଲ ତାଙ୍କର ପରମ ବନ୍ଧୁ । ଅଭାବ ଅନଟନ ସମୟରେ ଫକୀର ମୋହନଙ୍କୁ ସେ ବରାବର ମୋଟା ଟଙ୍କା ଦେଇ ସାହାଯ୍ୟ କରୁଥିଲେ । ଫକୀର ମୋହନଙ୍କୁ ଖାଲି ଟେକିବା ଲାଗି ସୁରେନ୍ଦ୍ର ମହାନ୍ତି ଗୁଡ଼ାଏ ଅପଚେଷ୍ଟା କରିଛନ୍ତି, ଅନ୍ୟ କେଉଁ ରାଜ୍ୟ ହୋଇଥିଲେ ଲୋକେ

ସୁରେନ୍ଦ୍ର ମହାନ୍ତିଙ୍କୁ ସାହିତ୍ୟରୁ, ତଡ଼ି ତାଙ୍କୁ ଏକଘରିକିଆ କରି ରଖିଥାଆନ୍ତେ ।'

ସମ୍ପାଦକ ରବି ବାବୁଙ୍କୁ ପୁଚ୍ଛିଲେ କହିଲେ "ଏଇଟା 'ସାହିତ୍ୟ କୁଦ'ରେ ବାହାରିଲେ ଲୋକେ ମୋ ମୁଣ୍ଡ ଛେଚି ଜଳିଦେବେନି ? ମୋ ପତ୍ରିକାଟାକୁ ପୋଡ଼ି ପକାଇବେ ନାହିଁ ?"

"କିଛି ହବନି । ପ୍ରବନ୍ଧ ଶେଷରେ ବନ୍ଧନୀ ଭିତରେ ଲେଖିଦେବ-ମତାମତ ପାଇଁ ସମ୍ପାଦକ ଦାୟୀ ନୁହନ୍ତି । ଏହାକୁ ପଢ଼ିବା ମାତ୍ରେ ଏକା ସୁରେନ୍ଦ୍ର ମହାନ୍ତି ନୁହନ୍ତି, ଆହୁରି ଦଶ କୋଡ଼ିଏ ଜଣ ବଡମୁଣ୍ଡିଆ ଲେଖକ ତାର ପ୍ରତିବାଦ ସବୁ ପଠାଇବେ । ସେଗୁଡ଼ିକ ଧାରାବାହିକ ଭାବରେ କାଢ଼ିବ । ଗାଲୁ ମାଲୁ ଭୁରୁଡ଼ି ହେଲା ବଡମୁଣ୍ଡିଆଙ୍କ ପାଇଁ ପଦ୍ମଚୋଳା, ପଦ୍ମଚୋଳା ବୋଲି ନହେଲେ ସେମାନେ ଗାତରୁ ବାହାରିବେ ନାହିଁ । କଥାମିଛ, ଗାଲୁ ଭୁରୁଡ଼ିକୁ ବଡମୁଣ୍ଡିଆମାନେ ଆଦୌ ସହ୍ୟ କରିପାରିବେ ନାହିଁ । ପ୍ରତିବାଦ ନ କଲେ ସେମାନେ ନିଜର କର୍ତ୍ତବ୍ୟରେ ଖିଲାପ କଲେ ବୋଲି ଭାବନ୍ତି । ନିଜକୁ ଅପରାଧୀ ବୋଲି ଭାବନ୍ତି । ତେଣୁ ସେମାନେ ଅଲବତ ପ୍ରତିବାଦ ପଠେଇବେ । ଏଇଟା ଏକ ସାଧାରଣ ସୌଜନ୍ୟ ଯେ ଯେଉଁ ପତ୍ରିକାରେ ଆପତ୍ତିଜନକ ଲେଖା-ବାହାରିଥିବ କେବଳ ତାହାରି ପାଖକୁ ପ୍ରତିବାଦ ପତ୍ର ଆସିବ । ଏଣୁ ମୁଁ ସାଗୁଆ ଝଣ୍ଡା ହଲେଇଲି, ଆଗେଇ ଯାଅ । ଅହଂ ତ୍ୱାଂ ସର୍ବ ପାପେଭ୍ୟୋ ମୋକ୍ଷୟିଷ୍ୟାମି ମାଶୁଚ ପ୍ରତିବାଦ ଆସି ପହଞ୍ଚିବା ମାତ୍ରେ ମୋତେ ଖବର ଦେବ । × × ×

ପନ୍ଦରଦିନ ବାଦ ଡାକରା ପାଇ ରବିନାରାୟଣ ମହାପାତ୍ରେ 'ସାହିତ୍ୟ କୁଦ' ଅଫିସକୁ ଧାଇଁଲେ । ସମ୍ପାଦକ ତାଙ୍କୁ ଦେଖିଲା ମାତ୍ରେ ହସି ହସି କହିଲେ—'ଆଃ ! କେଡେ ବଢ଼ିଆ ଯୋଜନାଟାଏ ନ କଲ ! ପ୍ରାୟ ସବୁ ବଡ଼ ବଡ଼ ସାହିତ୍ୟିକ ଉତ୍ତପ୍ତ ପ୍ରତିବାଦମାନ ପଠାଇଛନ୍ତି । ଏବେ ମଧ୍ୟ ଆସୁଛି । ପ୍ରତିବାଦ ଗୋଛାଟା ଭିତରୁ ସୁରେନ୍ଦ୍ର ମହାନ୍ତିଙ୍କ ପ୍ରତିବାଦଟି କଢ଼ାଗଲା । ଯେଉଁ ଯେଉଁ ଠାରେ ସମ୍ପାଦକ ନାଲି ଗାର

ମାଗ ଦେଇଥିଲେ ସେଇଗୁଡ଼ାକ ପଢ଼ାଗଲା । ଲେଖାଥିଲା × × କେଉଁ ଅନାମଧେୟ କୁଣ୍ଡା ଦାସ କି ଆଉ କନ୍ଥା ଦାସ ନାମ ପ୍ରାଦୁର୍ଭାବ ଯୋଉଁଏ ଲେଖାଟିଏ ଲେଖିଛନ୍ତି ତାହା ଜାଣିବା ଆମର ଦରକାର ନାହିଁ । ଅତ୍ୟଧିକ ମାଦକ ଦ୍ରବ୍ୟରେ ଘାରିହୋଇ ସେ ଯାହାକୁ ଓ୍ଵାଏସ୍ ବୋଲି କହୁଛନ୍ତି ତାହା ହୋଇ ନ ଥିବ । ଗଞ୍ଜେଇ ବେପାରର ଗୋଟାଏ ଟିପା ହିସାବ ଖାତା ହୋଇଥିବ ।

ଏହାବାଦ ସେ ବନ୍ଧୁ ରେକର୍ଡପତ୍ରର ନଜର ଦେଖାଇ କାନ୍ତିଲାଲ ଓ ଅନ୍ୟାନ୍ୟ ପ୍ରସଙ୍ଗରେ ଲେଖିଛନ୍ତି ।

ରବି ମହାପାତ୍ରେ କୁଲୁରି ଉଠି କହିଲେ—"ଦେଖିଲ, ଏମିତିଆ ଲେଖାଟିଏ ତୁମେ ଉମର ବଢେଇ ଦେଇଥିଲେ ବି ପାଇଥାଆନ୍ତି ? ହଁ ଥର ଥର କରି ଏ ସବୁଡ଼କ କାଢ଼ । ଏତକ ସରିଗଲେ ମୁଁ ଆଉ ଜଣେ ବଡ଼ ମୁଣ୍ଡିଆକୁ କେନ୍ଦ୍ର କରି ପୁଣି ପଦ୍ମତୋଳା ବୋଲିବି । ତୁମ ପତ୍ରିକାକୁ ଉଟେଇ ଦେବ । ହଁ, ଏଥରକ ଆଣ ଗ୍ଲୁହା ଆଉ ଛେନାପୋଡ଼, ଆମର ଗଡ଼ ବିଜୟ ହୋଇଯାଇଛି । ଆଉକୁ ଦରକାର ପାଟି ସୁଆଦିଆ ଆନନ୍ଦ" ।



# ବକ୍ତୃତା ଅମଳ

ଶେଷ ବକ୍ତାଙ୍କୁ ଡାକିବା ପୂର୍ବରୁ ସଭାପତି ଏକ ସତର୍କ ଘଣ୍ଟିଆ ବକ୍ତୃତା ଦେଇ କହିଲେ—ଦେଖନ୍ତୁ ଆମର ପ୍ରଥମ ଅଧିବେଶନର ସମୟ ନିର୍ଧାର୍ଯ୍ୟ ୪ଘଣ୍ଟା ପାଇଁ ସ୍ଥିର ହୋଇଥିଲା-ଆଠଟା ଠାରୁ ବାରଟା । ବାରଟା ବେଳେ ଭୋଜନ ଓ ବିଶ୍ରାମ । ଅପରାହ୍ଣ ଅଧିବେଶନ ୨ଟା ଠାରୁ ଆରମ୍ଭ ହେବ । ଆମର କର୍ମ ନିର୍ଘଣ୍ଟ ଏତେ ଟାଣଟୁଣ ଯେ ମିନିଟିଏ ମାତ୍ର ଏପାଖ ସେପାଖ ହେବା ସମ୍ଭବ ନୁହେଁ । ଆମର ସମୟ ସଚେତନତାର ଘୋର ଅଭାବ । ଯେଉଁ କାର୍ଯ୍ୟ ଯେତିକି ସମୟରେ କରିବାକୁ ଥିବ ସେତିକି ସମୟରେ ତାହା କରି ନ ପାରିଲେ ଦେଶ ଗଠନର ଆଶା ବିଡ଼ମ୍ବନା ମାତ୍ର । ଦେଖନ୍ତୁ ବର୍ତ୍ତମାନ ଘଣ୍ଟାରେ ୧୧ଟା ୫୦ମିନିଟ, ଶେଷବକ୍ତାଙ୍କୁ ମୁଁ ଅନୁରୋଧ କରିବି ସେ ମାତ୍ର ୪ମିନିଟରେ ତାଙ୍କ ବକ୍ତୃତା ଶେଷ କରନ୍ତୁ । ସଭାପତି ଅଭିଭାଷଣକୁ ମୁଁ ମଧ୍ୟ ୪ମିନିଟରେ ସାରିବି । ତାପରେ ଧନ୍ୟବାଦ ଦାତା ୨ମିନିଟରେ ଧନ୍ୟବାଦ ଦେଇ ସଭାସମାପ୍ତ କରିବେ । ସମୟ କାହାକୁ ଅପେକ୍ଷା କରେନାହିଁ । ଏବେ ସମୟ ଚାଲିଯାଉଛି । ଶେଷବକ୍ତାଙ୍କୁ ଯେକୌଣସିମତେ ୪ମିନିଟ ଭିତରେ ସାରିବାକୁ ହେବ । ମୋତେ ବାଧ ହୋଇ ଏଗୁଡ଼ାକ କହିବାକୁ ପଡ଼ୁଛି ଶେଷ ବକ୍ତାଙ୍କ ସମୟରୁ ୨୦ସେକେଣ୍ଡ ଚାଲିଗଲାଣି । ମୁଁ ନାଚାର, ବକ୍ତାଙ୍କୁ ମୁଁ ଅନୁରୋଧ କରୁଛି ସେ ୩ମିନିଟ ୪୦ସେକେଣ୍ଡରେ ବକ୍ତୃତା ସମାପ୍ତ କରନ୍ତୁ । ଦୁଃଖର ବିଷୟ ଭାରତୀୟମାନେ ବିଶେଷ କରି ଓଡ଼ିଆମାନେ ବିଲ୍‌କୁଲ ସମୟ ସଚେତନ ନୁହନ୍ତି । ଠିକ୍ ଆଠଟାରେ ଆସି ଦେଖେ ତ ଜଣେହେଲେ ସଭ୍ୟ ଏଠାରେ ନାହାନ୍ତି । ମୁଁ ଆଠଟାପରେ ଆସିଥାଆନ୍ତି । କିନ୍ତୁ ହଠାତ ଆମଘରେ ତାଙ୍କର ମୁଣ୍ଡ ଭିଷଣ ବଥେଇଲା । ମୁଁ ବାଧହୋଇ ନିତ୍ୟକର୍ମ ସାରି ପାକଶାଳାକୁ ଗଲି । ତାଙ୍କପାଇଁ ଚାହା ତିଆରି କରିବାକୁ ପଡ଼ିଲା । ଉଭୟେ ଚାହା ପିଇସାରିବା

ପରେ ସେ ଟିକିଏ ସୁସ୍ଥହୋଇ ଶୋଇପଡ଼ିଲେ । ସେଷେଇ ନ କଲେ ସମସ୍ତଙ୍କୁ ଉପାସ ରହିବାକୁ ହେବ । ବାଧ୍ୟହୋଇ ସେଷେଇ କଲି । ମୋତେ ଚଟାପଟ୍ ରାନ୍ଧିବାକୁ ଆସେ । ସେଷେଇ ଓ ଖିଆପିଆ ସାରି ମୁଁ ଠିକ୍ ଆଠଟାବେଳେ ପଢ଼ାଇବାକୁ ଯାଉଥାଏ, କିନ୍ତୁ ଦୁର୍ଭାଗ୍ୟବଶତଃ କାଠଗୁଡ଼ିକ କଞ୍ଚା ଥିଲା, ବିଲ୍‌କୁଲ ନିଆଁ ଧରିଲା ନାହିଁ । ଚାକର ଟୋକାର ଦୁଷ୍ଟାମି ଫଳରେ ମୋର ମୂଲ୍ୟବାନ ସମୟରୁ ଅଧଘଣ୍ଟାଏ ନଷ୍ଟ ହୋଇଗଲା । ସେ ଟୋକାଟାକୁ ପଠେଇଲି ବଢ଼ିଆ କାଠ ନେଇ ଆସିବାକୁ । ସେଠି କାଠଗୁଡ଼ିକ ଶୁଖିଲା । ଯେଉଁଠାରେ କଞ୍ଚା-କାଠର ସତ୍ତା ନାହିଁ । ଶଗ କାଠରୁ ଯେଉଁ ପଲଗା ବାହାରିଥାଏ ତାହା ଶୁଖି ଖଣ୍ଡ ଖଣ୍ଡ ହୋଇଥାଏ । ବୋକା ଚାକର ଟୋକାଟା ସେଠାରୁ ନ ଆଣି ତେମେଇ ଅଡ୍ଡାରୁ ଶଗକାଠ ନେଇ ଆସିଲା । ଶଗକାଠ ବେପାରୀ-ମାନେ ଘର ଗୁଲଖ । କାଠରେ ପାଣିଛିଞ୍ଚି ଓଦା କରି ରଖିଥାଆନ୍ତି । କାଠ ଓଦା ହେଲେ ଓଜନରେ ବଢ଼ିଯାଏ । ଫଳରେ କାଠଦଣ୍ଡିରେ ସାଢେ ପାଞ୍ଚକଲେ ହୋଇଯିବ । ସେହି କଞ୍ଚାକାଠକୁ ନିଆଁ ଧରେଇବାରେ ମୁଁ ଦରମରା ହୋଇଗଲି ।

ଧୂଆଁରେ ଆଖିକାନ ରୁନ୍ଧ ହୋଇଗଲା । ମୁଁ ତାଙ୍କୁ ସେଷେଇ କରିବାକୁ କହିଥାନ୍ତି । କିନ୍ତୁ ଦେଖିଲି ଧୂଆଁ ବାଜିଲେ ତାଙ୍କ ମୁଣ୍ଡ ଅଧିକ ବଥେଇବ । ଏଇ ଡରରେ ଆଖିନାଲ, ନାକରୁ ଶିଙ୍ଘାଣି ବୋହୁ ପଛକେ ବାଧ୍ୟହୋଇ ସେଷେଇ କଲି । ମୋର ମୂଲ୍ୟବାନ ସମୟରୁ ଏଇ ସେଷେଇଟା ଅଧଘଣ୍ଟାଏ ସ୍ୱେରକଲା । ମୁଁ ଯଦି ମୁଣ୍ଡ ଖଟେଇ ନ ଥାଆନ୍ତି ତେବେ ଅଧ ଘଣ୍ଟାଏ କାହିଁକି ପୂରା ଦେଡ଼ଘଣ୍ଟା ମୂଲ୍ୟବାନ ସମୟ ନଷ୍ଟ ହୋଇଯାଇ-ଥାଆନ୍ତା । ମୁଁ ବ୍ୟତିବ୍ୟସ୍ତ ହୋଇପଡ଼ିବାରୁ ଭଗବାନ ମୋତେ ଗୋଟାଏ ଉପାୟ ବତେଇଦେଲେ । ପଡ଼ିଶା ଘରୁ ଟିକିଏ କିରାସିନି ମାଗିଆଣି କାଠରେ ପକାଇଦେଲି, ତାପରେ ବେଶ୍ ହୁତୁହୁତୁ ହୋଇ ଜଳିଲା । ଚଟାପଟ ସେଷେଇ ସାରିଦେଲି । ମୁଁ ଯାହିତାହି ଦୁଇଟା ମୁହଁରେ ଗୁଞ୍ଜିଦେଲି । ତାପରେ ତାଙ୍କ ପାଖରେ ଖାଦ୍ୟ ଦେଇ ଏକାନିଶ୍ୱାସକେ ପଳାଇ ଆସିଲି । ମୋ ପାଖରେ ସମୟ ଅତି ମୂଲ୍ୟବାନ । ହଜାରେ କାମ ପଡ଼ିଥିଲେ ବି ମୁଁ ଛାଡ଼ିଦେଇ ପଳେଇ ଆସିଥାଆନ୍ତି । ଏଥିପାଇଁ ଚାକିରିରୁ ବରଖାସ୍ତ ହେବାକୁ ପଡ଼ିଥିଲେ ବି ମୁଁ ଖାତିର କରି ନ ଥାନ୍ତି । କିନ୍ତୁ ଘରେ ସେ

ଅସୁସ୍ଥ ଥିବା ସମୟରେ ତାଙ୍କୁ ଶେକ ଉପାୟରେ ଛାଡ଼ଦେଇ ଆସିବା ଏକ ପାଶବିକତାପୂର୍ଣ୍ଣ କାର୍ଯ୍ୟ ହୋଇଥାଆନ୍ତା । ଆମର ବୁଦ୍ଧିହୀନ ଲୋକେ ସେମାନଙ୍କ ପ୍ରତି ପାଶବିକ ଅବହେଳା ଦେଖାଉଥିବାରୁ ଆମ ଦେଶର ବର୍ତ୍ତମାନ ଏ ବିକଳ ଅବସ୍ଥା ଉପୁଜୁଛି । ହଁ ମୁଁ ଏହା ମଧ୍ୟ କହିବ ଯେ ଯଦି ଆମର ସେ ଖଟଉପରେ ବସି ପ୍ରସାଧନରତା ଥାଆନ୍ତେ କମ୍ବା ଉପନ୍ୟାସ ପଢୁଥାଆନ୍ତେ ତେବେ ମୁଁ କେବେହେଲେ ପାକଶାଳାକୁ ଯାଇ ନ ଥାନ୍ତି । ସବୁକଛି ତାଙ୍କ ଜମାରେ ଛାଡ଼ଦେଇ ପଳେଇ ଆସିଥାନ୍ତି । କେବଳ ମାନବିକତା ଦୃଷ୍ଟିରୁ ମୁଁ ଏପରି କଲି । ତା ନହେଲେ ମୁଁ ଠିକ୍ ଘଣ୍ଟାଏ ଘଣ୍ଟାଏ ଆଠଟାରେ ଆସି ପହଞ୍ଚି ଥାଆନ୍ତି । କନ୍ତୁ ଅନ୍ୟମାନେ ନ ଆସିଲେ କାହିଁକ । ସେମାନଙ୍କର ନ ଆସିବାଟା ଘୋର ଆପତ୍ତିଜନକ । ସମୟାନୁବର୍ତ୍ତିତା ନ ରହିଲେ ସୁଚରିତ୍ର ଓ ଶୃଙ୍ଖଳାଜ୍ଞାନ ଅସମ୍ଭବ । ମୁଁ ବେଶି ସମୟ ଆଉ ନେବି ନାହିଁ ବକ୍ତୃତା ପାଇଁ ନିର୍ଦ୍ଦିଷ୍ଟ ଥିବା ସମୟକୁ ବକ୍ତାମାନଙ୍କ ଭିତରେ ମୁଁ ବାଣ୍ଟିଦେଇ ସମସ୍ତଙ୍କୁ ୧୫ମିନଟ ଲେଖାଏଁ କହିବାକୁ କହିଲି । କନ୍ତୁ ଜଣେ ଜଣେ ଅଧଘଣ୍ଟାଏ ଲେଖାଏଁ କହିବାକୁ ଛାଡ଼ିଲେ ନାହିଁ । ଯେତେ ସତର୍କ ଘଣ୍ଟି ଦେଲି ସେମାନେ ଶୁଣିଲେ ନାହିଁ; ଫଳରେ ଏ ଅବସ୍ଥା । କେହି ଯଦି ସଭାପତିଙ୍କ ନିର୍ଦ୍ଦେଶକୁ ନ ମାନିବେ ତେବେ ସଭାରେ ଶୃଙ୍ଖଳା ରହିବ କପରି ? ୧୨ଟା ବେଳେ ଯେକୌଣସି ଉପାୟରେ ସଭା ଶେଷ କରିବାକୁ ହେବ । ଆଉ ମାତ୍ର ୪ମିନଟ ରହିଲା । ଆପଣମାନେ ବଡ଼ ଉଦ୍‌ବିଗ୍ନ ହୋଇପଡ଼ିବେଣି । ଉଦ୍‌ବିଗ୍ନ ହେବାର କଥା । ଆପଣମାନେ ଧୈର୍ଯ୍ୟର ସହିତ ଯେ ୧୨ଟା ଯାଏ ଧୀର ସ୍ଥିର ହୋଇ ଶୁଣିଲେଣି ତାହା କଛି କମ୍ କଥା ନୁହେଁ । ମୁଁ ଆପଣମାନଙ୍କର ଆଉ ଅଧିକ ମୂଲ୍ୟବାନ ସମୟ ଅପହରଣ କରିବାକୁ ଚାହେଁ ନାହିଁ ।

ଶେଷବକ୍ତା ଆଉ ସମ୍ଭାଳି ନ ପାରି ପେଟଭିତରୁ ଅସନ୍ତୋଷ ତକ ଓକାଳି ପକାଇ କହି ଉଠିଲେ । "ଆଉ କେମିତି ଅପହରଣ କରିଥାଆନ୍ତେ । ମୋ ପାଇଁ ଯେଉଁ ୪ମିନଟ ସମୟ ଦେଇଥିଲେ ତାକୁ ଗିଳି ଧନ୍ୟବାଦ-ଦାତାଙ୍କ ସମୟ ଗିଳିବାକୁ ବସିଲେଣି । ଆପଣଙ୍କ 'ହାତଘଣ୍ଟା' ଆଉ ଚାହିଁ ବକ୍ତୃତା ଦିଅନ୍ତୁ । ଆମେ ତାହାହେଲେ ଯାଉଛୁ ଆଉ ବସିବୁ କାହିଁକ ?"

ସଭାପତି ଅନୁତପ୍ତ କଣ୍ଠରେ କହିଲେ—"ଆପଣମାନଙ୍କ ଆଗେ ଏପରି ବିରକ୍ତିଜନକ ଅବସ୍ଥା ଉପୁଜି ଥିବାରୁ ମୁଁ ମର୍ମାହତ ଏବଂ ସେଥି-ପାଇଁ କ୍ଷମା ମାଗୁଛି । ଏ ଅବସ୍ଥା କିନ୍ତୁ ମୁଁ ଉପୁଜାଇ ନାହିଁ ଆପଣମାନେ ଜାଣିଥିବେ ସଭା ସଭ୍ୟମାନଙ୍କର ଗୋଟିଏ ସୁଶୃଙ୍ଖଳିତ ଅନୁଷ୍ଠାନ । କୌଣସି ଏକ ବିଷୟରେ ନିଜ ନିଜ ମତ ଦାନକରି ସମାଜକୁ ପ୍ରକୃତ ପଥ ଦେଖାଇବା ପାଇଁ ଏହି ଅନୁଷ୍ଠାନ ଏକ ପ୍ରକୃଷ୍ଟ କ୍ଷେତ୍ର ଥିଲା ।"

ଶେଷବକ୍ତା ଉତ୍କ୍ଷିପ୍ତ ହୋଇ କହି ଉଠିଲେ—"ଷଣ୍ଢ ପୁରେଇବା ପାଇଁ ଏହା ମଧ୍ୟ ଏକ ପ୍ରକୃଷ୍ଟ କ୍ଷେତ୍ର ଥିଲା ।"

ମାନ୍ୟବର ଶେଷବକ୍ତା ଯାହା କହିଲେ ତାହା କେତେକାଂଶରେ ସତ । ଅତୀତରେ ସଭା ମଧ୍ୟରେ ଷଣ୍ଢ ପୁରେଇବାର ବହୁ ନଜିର ରହିଛି । ଷଣ୍ଢ ପୁରେଇବାରେ କେତେକ ଲୋକ ଅତୀତରେ ବେଶ୍ ଖ୍ୟାତି ଅର୍ଜନ କରିଥିଲେ । କିନ୍ତୁ ସଭାର ଏହା ଏକ ଅଙ୍ଗ ନୁହେଁ । ସଭାକୁ ସୁନିୟନ୍ତ୍ରିତ କରିବାକୁ ଜଣେ ସଭାପତି ରହିଲେ । ସଭାରେ ସେ ହେଲେ ସର୍ବେସର୍ବା । ତାଙ୍କର ଆଦେଶ ସମସ୍ତଙ୍କ ଶିରୋଧାର୍ଯ୍ୟ । ତାଙ୍କୁ କେହି ପ୍ରଶ୍ନ କରିପାରିବେ ନାହିଁ ।

ଶେଷବକ୍ତା ରାଗିଯାଇ କହିଲେ "ନା ଆପଣ ତ ହିଟ୍‌ଲରଙ୍କ ବଡ଼ ବାପା । ଆପଣ ତ ପଣ୍ଡିତଙ୍କ ପୁଅ । ମାଙ୍କଡ଼ ମାରିଲେ ମାଙ୍କଡ଼ିଆ ଧାକଡ ହୋଇଯିବ । ଆପଣ କେବଳ କହି ଲାଗିବେ ଆଉ ଆମେ କେବଳ ଶୁଣି ଲାଗିବୁ ।"

"ନା ନା ଏହା କେବେହେଲେ ହୋଇପାରିବ ନାହିଁ । ମୁଁ ଯଦି ସଭାପତିର ଯଥାର୍ଥ ଆଚରଣ ନ ଦେଖାଏ ତେବେ ମୁଁ ସେ ଆସନ ଗ୍ରହଣ କରିବାକୁ ଅଯୋଗ୍ୟ । ଥରେ ଦି'ଥର ଅଯୋଗ୍ୟ ବିବେଚିତ ହୋଇଗଲେ ମୋତେ ଆଉ କେହି ସଭାପତି ପଦରେ ବରଣ କରିବେ ନାହିଁ, ଏ ବିଷୟରେ ମୁଁ ଖୁବ୍ ସଚେତନ । ଏପରି ଏକଛତ୍ର ମନୋବୃତ୍ତି ମୋ ପକ୍ଷରେ ସମ୍ଭବ ନୁହେଁ । ମୁଁ ଭଲଭାବରେ ଜାଣେ ଏହିପରି ଧନମୁଖୀ ସଭାପତିମାନଙ୍କ ଅବାଞ୍ଛିତ ଆଚରଣ ଫଳରେ ଯେଉଁ ପ୍ରତିବାଦ

ଆରମ୍ଭ ହେଲା ସେହିଥିରୁ ଜନ୍ମନେଲା "ଷଣ୍ଢ ପୁରେଇ"। ବାସ୍ତବିକ ଏପଞ୍ଚ ସଭାପତିମାନଙ୍କ ଉଗ୍ର ମୁଖଳତା ପାଇଁ 'ଷଣ୍ଢ ପୁରେଇ' ହିଁ ଏକମାତ୍ର ମହୌଷଧ । ମୋର ବଡ଼ ସୌଭାଗ୍ୟ ମୁଁ କେବେହେଲେ 'ଷଣ୍ଢ ପୁରେଇ'ର ସମ୍ମୁଖୀନ ହୋଇନାହିଁ ।"

କ୍ରୋଧରେ ଉନ୍ମତ୍ତପ୍ରାୟ ହୋଇ ବକ୍ତା କହିଲେ—"ଆଜ ଏଇଠି ଆପଣ 'ଷଣ୍ଢ ପୁରେଇ'ର ସମ୍ମୁଖୀନ ହୋଇଛନ୍ତି, ଏବଂ ମୁଁ ନିଜେ ସେଇ ଷଣ୍ଢ । ମୁଁ ଆଉ ଏ ସଭାକୁ ସହ୍ୟ କରିପାରିବ ନାହିଁ । ଏବେ ଷଣ୍ଢମୂର୍ତ୍ତି ଧରିବାକୁ ବାଧ୍ୟହେବ ।"

"ମୁଁ ଭଲ କରି ଜାଣେ ଆପଣ ଜଣେ ଷଣ୍ଢ । ଜଣେ ଶାନ୍ତଶିଷ୍ଟ ଜର୍ସି ଷଣ୍ଢ । ଯାହାର କାର୍ଯ୍ୟ ହେଲା ଧୀର ସ୍ଥିର ଭାବରେ କେବଳ ମାନବ ସମାଜକୁ ନବ ନବ ମାନସ ସନ୍ତାନ ଦାନ କରିବା, କାହାରି କିଛି ଅନିଷ୍ଟ ନ କରି ଶାନ୍ତଶିଷ୍ଟ ଭାବେ ରହିବା । ମୁଁ ଭଲଭାବେ ଜାଣେ ଆପଣ ବସ୍ତି ଷଣ୍ଢ ନୁହନ୍ତି ଯେ କି ଜବରଦସ୍ତ ପରିବା ବିକାଳିର ପସରାରୁ ଶତବାଧା ସତ୍ତ୍ୱେ ମୁହଁ ପୂରାଇଦେଇ କିଛି ପରିବା ଗର୍ଭସାତ୍ କରେ, ଯେ କି ଅନ୍ୟବସ୍ତି ଭ ଷଣ୍ଢ ଦେଖିବା ମାତ୍ରେ ହେଣ୍ଟାଳ ଦେଇ, ଖୁରରେ ଭୂଇଁ ଚିରି ଆଡ଼ ପତେଇ ସଙ୍ଗେ ସଙ୍ଗେ ତାକୁ ଆକ୍ରମଣ କରେ ଏବଂ ରାସ୍ତାକୁ ଏକ ଯୁଦ୍ଧକ୍ଷେତ୍ରରେ ପରିଣତ କରି ଯାନବାହାନ, ପଦଗ୍ରସ୍ତମାନଙ୍କୁ ଅଟକେଇ ଦିଏ । କାହାର କି ଜରୁରୀ କାମ ଅଛି, କାହାର ଯିବା ନିହାତି ଦରକାର, ନଗଲେ ତା'ର କି କ୍ଷତି ହେବ ସେକଥା ତା'ର ମୁଣ୍ଡରେ ପଶେ ନାହିଁ । ଅନ୍ୟ ଷଣ୍ଢଟି ରାଜପଥରେ ଗୋମୟ ଓ ଗୋମୂତ୍ର ନିଷ୍କାସନ କରି କରି ପଳାୟନ ନ କରିବାଯାଏ ସେ ଏହିପରି ଯୁଦ୍ଧରେ ବ୍ୟାପୃତ ଥାଏ । ଆପଣ ଏବଂବିଧ ବସ୍ତି ଷଣ୍ଢ ନୁହନ୍ତି, ଆପଣ ଉଦାରଚେତା ଜର୍ସି ଷଣ୍ଢ । ମାନସ ସନ୍ତାନ ଦାନକାରୀ ଜର୍ସି ଷଣ୍ଢ । ଆପଣଙ୍କଠାରୁ ଯେଉଁ ମାନସ ସନ୍ତାନମାନେ ଜନ୍ମ ଲାଭ କରିବେ ସେମାନେ ହେବେ ଦେଶର ଅଦ୍ୱିତୀୟ ସାହିତ୍ୟିକ, ଶିଳ୍ପୀ, ଜନନାୟକ, ସମାଜ ସେବୀ ଓ ବୈଜ୍ଞାନିକ ।"

ଶେଷ ବକ୍ତା ତେଲକୁଣ୍ଡରେ ବୁଡ଼ିଗଲେ । ତାଙ୍କ ମୁହଁରୁ ଆଉ କଥା ବାହାରିଲା ନାହିଁ । ସେ ମନେ ମନେ ଭାବିବାକୁ ଲାଗିଲେ—"ବକ୍ତୃତା

ହେଇଥିଲେ ଏପରି ପ୍ରଶଂସା ମିଳିବାର ଆଶା ନ ଥିଲା । ବରଂ କେତେ କେତେ ଉଚ୍ଛୃଙ୍ଖଳ ଶ୍ରୋତା ନାନା ପ୍ରକାର ଖୁଣ୍ଟା ଦେଇ ଥାଆନ୍ତି । ତାଳିଟିଏ ମିଳିଥାଆନ୍ତା କି ନାହିଁ ସନ୍ଦେହ । ଅଥଚ ତା ବଦଳରେ ଅଯଥା ପ୍ରଶଂସାରେ ସେ ମୋତେ ଗାଧୋଇ ଦେଲେଣି । ମୌନତା ଏବେ ବି ମୋର ଅବଶ୍ୟ ଅବଲମ୍ବନୀୟ । ଏହା ଭାବି ସେ ବସ୍ତି ଷଣ୍ଢର ରୂପ ଗ୍ରହଣ ନ କରି ଜର୍ସି ଷଣ୍ଢର ରୂପ ଗ୍ରହଣ କଲେ । କିନ୍ତୁ ଧନ୍ୟବାଦଟା ସମ୍ଭାଳି ହୋଇ ରହିପାରିଲେ ନାହିଁ । ସେ ଚଟାପଟ୍ ଆରମ୍ଭ କରିଦେଲେ—"କିନ୍ତୁ ଆପଣ ଜର୍ସିଷଣ୍ଢ ହେବାକୁ ସେ କାହାକୁ ସୁଯୋଗ ଦେଲେ ନାହିଁ । ଆପଣ ନିଜେ ତ ହୋଲଷ୍ଟିନ୍ ଷଣ୍ଢ ପାଲଟି ଗଲେଣି । ଏଠି ଜର୍ସି ଷଣ୍ଢର ସ୍ଥାନ କାହିଁ । ଆପଣ ତ ଦଶମିନିଟ ସମୟକୁ ଶେଷ ବକ୍ତା, ଆପଣ ନିଜେ ଓ ମୋ ଭିତରେ ଭିତରେ ୪, ୪, ୨ ମିନିଟ୍ ଭାବରେ ବାଣ୍ଟିଦେଲେ । କାହାକୁ କହିବାକୁ ନଦେଇ ଆପଣ ଶେଷ ବକ୍ତାଙ୍କ ୪ ମିନିଟ୍, ଆପଣଙ୍କ ନିଜର ୪ ମିନିଟ୍ ମୋର ୨ ମିନିଟ୍ ହଜମ କରି ଭୋଜନ ସମୟରୁ ପ୍ରାୟ ଦଶମିନିଟ୍ ହଜମ କରିସାରିଲେଣି, ଆମ ପାଇଁ ଆପଣ ଆଉ କିଛି ରଖି ନାହାନ୍ତି ।"

"ଆ-ହା-ହା ଆପଣଙ୍କ ପରି ଜଣେ ଉଚ୍ଚକୋଟିର 'ସାହିତ୍ୟିକ ଏପରି କହିଲେ ମୋର ଆଉ ଗତି କାହିଁ ? ସଭାରେ ମତାନୈକ୍ୟ ଦେଖାଦେଲେ କିଛି ଅପ୍ରତ୍ୟାଶିତ ଘଟଣା ଘଟିଲେ କିମ୍ବା କିଛି ଅବାଞ୍ଛନୀୟ ପରିସ୍ଥିତି ଉପୁଜିଲେ ତାହାର ମୁକାବିଲା ସଭାପତି ହିଁ କରିଥାନ୍ତି । ଏଇଟା ସଭାପତିଙ୍କ ପରମ କର୍ତ୍ତବ୍ୟ । ମୁଁ ସେହି କର୍ତ୍ତବ୍ୟ ପାଳନ କରୁଛି ମାତ୍ର । ମାତ୍ର ଦଶ ପନ୍ଦର ମିନିଟ ପାଇଁ ଆପଣ ଧୈର୍ଯ୍ୟ ହରାଇଲେ ଚଳିବ ? ଅବଶ୍ୟ ଏହା ଆପଣଙ୍କର ସମୟ ସଚେତନତାର ପ୍ରମାଣ ଦିଏ ଯାହା କି ଅନ୍ୟମାନଙ୍କଠାରେ କ୍ୱଚିତ ଦେଖାଦେଇଥାଏ । ଥରେ ମିଷ୍ଟର ଦାସ ଜଣେ ରାଜାଙ୍କୁ ଦିନ ୯ଟା ବେଳେ ସାକ୍ଷାତ ଦେବାକୁ ସମୟ ଦେଇଥିଲେ । ରାଜା କିନ୍ତୁ ସାଢ଼େ ନଅଟାରେ ଆସି ପହଞ୍ଚିଲେ । ମିଷ୍ଟର ଦାସ ଆଉ ତାଙ୍କୁ ଦେଖାଦେଲେ ନାହିଁ । ରାଜା ବହୁତ କଟାଳ କରିବାରୁ ସେ ବୈଠକଖାନାକୁ ଆସି କାନ୍ଥରେ ଟଙ୍ଗା ହୋଇଥିବା ଗୋଟିଏ ଘଣ୍ଟାପ୍ରତି ତାଙ୍କ ଦୃଷ୍ଟି ଆକର୍ଷଣ କରି ପଚାରିଲେ—"ଘଣ୍ଟାରେ କେଇଟା ବାଜୁଛି ।"

"ନଅଟା ଗୁଳଣ"

"ଆପଣ ନଅଟାରେ ଆସିବାକୁ କହିଥିଲେ । ଏହି ଦଶଟଙ୍କା ମୂଲ୍ୟର ଘଣ୍ଟାଟା ନଅଟା ବେଳେ ଆପଣଙ୍କୁ ଅପେକ୍ଷା କରି ରହିଲା ନାହିଁ । ସେ ଆଗେଇ ଚାଲିଗଲା । ମିଷ୍ଟର ଦାସଙ୍କ ମୂଲ୍ୟ ଦଶଲକ୍ଷରୁ ଊର୍ଦ୍ଧ୍ୱ । ସେ କିପରି ଆପଣଙ୍କୁ ଅପେକ୍ଷା କରିବ…"

ସମସ୍ତ ସଚେତନ ସଭାପତି ଏହିପରି ସମୟଜ୍ଞାନ ବିତରଣ କରୁକରୁ ଅଧଘଣ୍ଟାଏ ବିତିଗଲା । ବହୁ ଶ୍ରୋତା ଆଗରୁ ବାଟ କାଟିଥିଲେ । ବାକି କେତେଜଣ ଭୋଜନ ଉଦ୍ଦେଶ୍ୟରେ ଉଠି ପଳେଇଲେ । ଶେଷ ବକ୍ତା ଓ ଧନ୍ୟବାଦଦାତା କିନ୍ତୁ ନେପେଡ଼ି ରହିଥାଆନ୍ତି । ସେ ଦୁହିଁଙ୍କ ବକ୍ତୃତା ଦେବା "ଲୋଭ ସେପର୍ଯ୍ୟନ୍ତ ଛାଡ଼ିପାରି ନ ଥାନ୍ତି ଅଳ୍ପ ଲୋକରେ ଜ୍ଞାନ ବିତରଣ ଅତି ଚମତ୍କାର ଭାବରେ ହୁଏ ବୋଲି ଜାଣିଥିବାରୁ ସଭାପତି ଅଧିକ ଉତ୍ସାହିତ ହୋଇ ବକି ଲାଗିଥାଆନ୍ତି । ସଭାରୁ ଉଠି ପଳେଇଥିବା ଶ୍ରୋତାମାନେ ବାହାରେ ଅପେକ୍ଷା କରୁଥିବା ଉଦ୍ୟୋକ୍ତାମାନଙ୍କ ଉପରେ ରାଗିଯାଇ କହିଲେ—"ଆମ୍ଭମାନଙ୍କ ପକ୍ଷରେ ବାରଟା ଯାଏ ଅପେକ୍ଷା କରିବା କଷ୍ଟକର । ଆମ୍ଭେମାନେ ଦଶଟାରେ ଖାଇବା ଲୋକ, କାର୍ଯ୍ୟସୂଚୀ ୧୨ଟା ଯାଏ ଥିବାରୁ ପେଟ କଅଁ କଅଁ ଡାକୁଥିଲେ ସୁଦ୍ଧା ମୁହଁ ନେପେଡ଼ି ପଡ଼ିରହିଲୁ । ସେଥିରେ ବି ସେ ସଭାପତିଙ୍କ ମନ ମାନିଲା ନାହିଁ । ଅଦଉତି ସାଧି ବକ୍ତୃତା ସ୍ଲୁଇସ୍ ଖୋଲି ଦେଇଛନ୍ତି । ଆଜି ଦିନତମାମ ଝରି ବୋହିଲେ ସୁଦ୍ଧା ସରିବାର ସମ୍ଭାବନା ନାହିଁ । ଆମେ ଦିନ ତମାମ ଏକାଦଶୀ କରିପାରିବୁନି । ଆପଣମାନେ ଭୋଜନ ବ୍ୟବସ୍ଥା ନ କରିବେ ତ ନିକଟରେ ହୋଟେଲ କେଉଁଠି ଅଛି କୁହନ୍ତୁ, ଆମ୍ଭେମାନେ ସେଇଠାକୁ ଯାଇ ଖାଇ ଆସିବୁ ।"

ଉଦ୍ୟୋକ୍ତାମାନଙ୍କ ଭିତରୁ ଦଳେ ସେମାନଙ୍କୁ ଭୋଜନାଳୟକୁ ନେଇଗଲେ । ଆଉ ଦଳେ ଯାଇ ସଭାପତିଙ୍କୁ ବକ୍ତୃତା ଦେବାରୁ ନିବର୍ତ୍ତାଇବା ଉଦ୍ଦେଶ୍ୟରେ କହିଲେ—"ଆଜ୍ଞା ଗୋଟାଏ ବାଜିବାକୁ ବସିଲାଣି । ତେଣେ ଘୋର ବିଶୃଙ୍ଖଳା ଦେଖାଦେଲାଣି । ଦୟାକରି ବନ୍ଦ କରନ୍ତୁ ।"

ସଭାପତି ବକ୍ତୃତାରେ ମଜ୍ଜିଯାଇ ସବୁକଥା ଏକାନରେ ପୂରେଇ ସେ କାନରେ କାଢ଼ି ଦେଲେ, ଓଲଟି ତାଙ୍କ ଶ୍ରୋତା ସଂଖ୍ୟା ୨ରୁ ୭କୁ ବଢ଼ିବାର ଦେଖି ସେ ଉଲୁସି ଉଠିଲେ ଓ ନୂଆ ଶ୍ରୋତାଙ୍କୁ ସାନ୍ତ୍ୱନା ଦେବାକୁ ଯାଇ କହିଲେ, "ଯେତେବେଳେ ଗୋଟିଏ ଜନଷର ଆ...ଏ ତା'ର ଅନ୍ୟ ଯେକୌଣସି ଧନ ନଷ୍ଟପ୍ରାୟ ହେବ, ଏଥିରେ ସନ୍ଦେହ ନାହିଁ । ବକ୍ତୃତା ଯେତେବେଳେ ବିରକ୍ତିଜନକ ହୁଏ ସେତେବେଳେ ଶ୍ରୋତାମାନେ ଗୋଟିଏ ଗୋଟିଏ ହୋଇ ଖସି ଚାଲିଯାଆନ୍ତି । କିନ୍ତୁ ଅସଲ 'ରସଗ୍ରାହୀ ଶ୍ରୋତା ଜୋକପରି ଲାଖିଯାଆନ୍ତି । ମାର୍ଜାର ଶିଶୁ ମାତୃସ୍ତନରେ ମୁହଁ ଲଗାଇ ବହୁ ସମୟ ଯାଏ ପଡ଼ି ରହିଲାପରି ସେମାନେ ବକ୍ତୃତାରେ କାନକୁ ପୂରେଇ ଦେଇ ବସିରହନ୍ତି ଓ ବକ୍ତୃତା ସୁଧାପାନ କରିଥାନ୍ତି । ବକ୍ତୃତାର ଉତ୍କର୍ଷତା ଦେଖାଦେଲେ କ୍ରମେ ଶ୍ରୋତା ସଂଖ୍ୟା ବଢ଼ନ୍ତି । ଏଇ ଦୁଇଜଣ ଶ୍ରୋତା ଥିଲେ ଆପଣ ୪ଜଣ ଶୁଣିବାକୁ ଆସିଲେ । ବକ୍ତୃତା ଖରାପ ହୋଇ-ଥିଲେ ଆପଣ କେବେହେଲେ ଆସି ନ ଥାନ୍ତେ । ମୋ ବକ୍ତୃତାରେ ଯେ ଆପଣ ଆକୃଷ୍ଟ ହୋଇ ଆସିଛନ୍ତି ଏଥିରେ ସନ୍ଦେହ ନାହିଁ । ଏ ଦିଗରେ ମୁଁ ଆପଣମାନଙ୍କୁ ନିରାଶ କରିବି ନାହିଁ..."

ଜଣେ ଉଦ୍ୟୋକ୍ତା ଶେଷ ବକ୍ତା ଓ ଧନ୍ୟବାଦଦାତାଙ୍କୁ ପାଖକୁ ଡାକିନେଇ କହିଲେ—"ଆଜ୍ଞା ଆମଭିତରୁ ୨'ଜଣ ଏଠି ବସି ଶୁଣିବୁ । ଆପଣ ୨ଜଣ ଭୋଜନାଳୟ ଯାଇ ଖାଇ ଆସନ୍ତୁ । ବହୁ ଶ୍ରୋତା ବର୍ତ୍ତମାନ ଖାଇବାରେ ଲାଗିଛନ୍ତି ।"

ସେ ଦୁହେଁ କିନ୍ତୁ ଖୁଣ୍ଟପରି ବସି ରହିଲେ, ଆଉ କେତେ ମିନିଟ ଗଲେ ସେମାନଙ୍କର ପାଳି ଅବଶ୍ୟ ପଡ଼ିବ । ଜନ୍ମହେଲେ ମୃତ୍ୟୁ ଯେପରି ସତ୍ୟ ସଭାପତି ପାଟି ବନ୍ଦ କରିବା ମାନେ ସେମାନଙ୍କର ପାଳି ପଡ଼ିବା ସେହିପରି ସତ୍ୟ । ହାତ ମୁଠାରେ ଥିବା ନିଜର ସୌଭାଗ୍ୟକୁ ଛାଡ଼େ କିଏ ? ସେମାନଙ୍କ ଅନୁରୋଧକୁ ବରଂ ଏକ ଷଡ଼ଯନ୍ତ୍ର ବୋଲି ଭାବିଲେ ଏବଂ ପୂର୍ବପରି ବସିରହିଲେ ।

ଭୋଜନାଳୟରୁ ଫେରି କେତେକ ଶ୍ରୋତା ପୁନର୍ବାର ଆସି ପୂର୍ବ ଶ୍ରୋତାଙ୍କ ଗହଣରେ ବସିଲେ । ସଭାପତି ଏଥିରେ ଆହୁରି ଉତ୍ସାହିତ

ହୋଇଉଠିଲେ । 'ତାଙ୍କର ବକ୍ତୃତା ଯେ ଅଧିକରୁ ଅଧିକ ଆକର୍ଷଣୀୟ ହୋଇଛି ତାହା ସେ ବେଶ୍ ଉପଲବ୍ଧି କଲେ । ବଜସ ଦେଢ଼ଘଣ୍ଟା ସମସ୍ତଙ୍କ କାନକୁ ଖେଁ ଖେଁ କରିବାପରେ ତାଙ୍କ ତଣ୍ଟି ଶୁଖି ଆସିବା ସେ "ନୁଭବ କରି ପାଣି ଗିଲାସେ ମାଗି ଢକ ଢକ କରି ପିଇବାକୁ ଲାଗିଲେ । ଉଦ୍ୟୋକ୍ତାମାନେ ୩ଜଣଙ୍କ ହାତ ଧରି ଘୋଷାଡ଼ି ନେଇଯିବା ପରେ ସଭାସ୍ଥଳରେ ଶାନ୍ତି ଫେରି ଆସିଲା । ଶେଷବକ୍ତା ଓ ଧନ୍ୟବାଦଦାତା ଘୋଷଡ଼ା ହୋଇ ଗଲାବେଳେ ନିଜ ନିଜ ବକ୍ତବ୍ୟରୁ କିଛି ଫୋପାଡ଼ି ହେଇଯାଇଥିଲେ ।

---

## ଫତୁରାନନ୍ଦଙ୍କର ପ୍ରକାଶିତ ପୁସ୍ତକାବଳୀ


୧ । ନାକ୍‌ଟା ଚଶ୍ମକର (ଉପନ୍ୟାସ)
୨ । ନିଲଠା କବି (କବିତା)
୩ । ସାହିତ୍ୟ ଭୂତ (ଗଳ୍ପ)
୪ । ହେବରେସା ,,
୫ । ବିଦୂଷକ ,,
୬ । ମଙ୍ଗଳବାରିଆ ସାହିତ୍ୟ ସଂସଦ (ଗଳ୍ପ)
୭ । ହସକୁର ,,
୮ । ବୃହତ୍ ଭାଣ୍ଡ ,,
୯ । ଅମୃତ ବେହିଆ ,,
୧୦ । ଅ ଦର୍ଶ ହିନ୍ଦୁ ହୋଟେଲ (ଅନୁବାଦିତ ଉପନ୍ୟାସ)
୧୧ । ଭାରତର ଶ୍ରେଷ୍ଠ ହାସ୍ୟଗଳ୍ପ (ଅନୁବାଦିତ ଗଳ୍ପମାଳା)
୧୨ । ଭେଟ (ଗଳ୍ପ)
୧୩ । ସମାଲୋଚନା (ହାସ୍ୟରଚନା)
୧୪ । ଗମାତ୍ (ଗଳ୍ପ)
୧୫ । ନିଦାବେହେଲ ,,
୧୬ । କଳିକଣ୍ଠ ଚେଙ୍କ (ନାଟକ)
୧୭ । ସାହିତ୍ୟ ବେହୁଷଣ (ଗଳ୍ପ)


*